# ସମାଜ ଶାସନ ଓ ସଂସ୍କାର


ଲେଖକ—

ଅଧ୍ୟାପକ ଶ୍ରୀ ବୈଦ୍ୟନାଥ ମିଶ୍ର, ଏମ୍. ଏ., [illegible] କୋର୍)



ପୁନର୍ମୁଦ୍ରଣ

୧୯୫୫

ପ୍ରକାଶକ

କଟକ ଟ୍ରେଡ଼ିଂ କମ୍ପାନୀ

କଟକ—୨

# ସୂଚୀପତ୍ର

| ବିଷୟ | ପୃଷ୍ଠା |
| --- | --- |

# ସମାଜ, ଶାସନ ଓ ସଂସ୍କାର

## ବ୍ୟକ୍ତି ଓ ସମାଜ

ବ୍ୟକ୍ତି ଓ ସମାଜ ପରସ୍ପର ସହିତ ସଂପୃକ୍ତ । ବ୍ୟକ୍ତି ବିନା ସମାଜ ଗଠନ ହୋଇ ପାରିବ ନାହିଁ । ବ୍ୟକ୍ତିଙ୍କୁ ନେଇ ସମାଜ । ସମାଜ ବିନା ବ୍ୟକ୍ତିର ବିକାଶ ସମ୍ଭବ ହୋଇପାରିବ ନାହିଁ । ବ୍ୟକ୍ତିର ଜୀବନ ପାଇଁ ସମାଜ । ଅତି ଆଦିମ କାଳରୁ ବ୍ୟକ୍ତି ରହିଛନ୍ତି— ସମାଜ ମଧ୍ୟ ରହିଛି । ବ୍ୟକ୍ତି ଓ ସମାଜର କେବେ ଆରମ୍ଭ ହେଲା, ତା ଇତିହାସରେ ଖୋଜି ମିଳିବ ନାହିଁ । ଏଥିପାଇଁ ମନୁଷ୍ୟକୁ କଳ୍ପନା କରିବାକୁ ପଡ଼ିବ । କଳ୍ପନା ସତ ହୋଇପାରେ—ମିଛ ମଧ୍ୟ ହୋଇ ପାରେ । ତର୍କ କରିବାର କୌଣସି ଅବକାଶ ନାହିଁ । ସଂକ୍ଷେପ ତଥା ସ୍ଥୂଳ ଭାବେ ବ୍ୟକ୍ତି ଓ ସମାଜର ସମ୍ପର୍କ ଦେଖିବା ।

ମନୁଷ୍ୟ ଏକ ସାମାଜିକ ଜୀବ । ସମାଜରେ ସେ ରହିବାକୁ ଭଲ ପାଏ । ଖେଳିବା, ବୁଲିବା, ବସିବା, କାନ୍ଦିବା ସବୁପାଇଁ ସେ ଅନ୍ୟ ମନୁଷ୍ୟର ସାହାଯ୍ୟ ଲୋଡ଼େ । ଏତ ଦୁଃଖବେଳେ ମନକଥା

ଅନ୍ୟ ଆଗରେ ଖୋଲି କହିଦେଲେ, ମନର ଦୁଃଖ ଅଧେ କମିଯାଏ । ଅତ ସୁଖଦେଲେ କେହି ଜଣେ ସାଙ୍ଗ ମିଳିଗଲେ, ସୁଖ ଦୁଇଗୁଣ ବଢ଼ିଯାଏ । ବଣ ଜଙ୍ଗଲରେ ପଶୁମାନେ ମଧ୍ୟ ଦଳ ଦଳ ହୋଇ ବୁଲନ୍ତି । ସେମାନଙ୍କର ଭାବଭଙ୍ଗୀ କଥାରେ ବ୍ୟକ୍ତ କରିବା'ର ଶକ୍ତି ନାହିଁ—ତଥାପି ସେମାନେ ଏକାଠି ରହିବାକୁ ଚାହାନ୍ତି । ମନୁଷ୍ୟର ଯେତେବେଳେ ଭାବଭଙ୍ଗୀ ବ୍ୟକ୍ତ କରିବାର ଶକ୍ତି ଅଛି, ଗୋଟିଏ କଥାକୁ ବିସ୍ତୃତ ଭାବେ ମତପ୍ରକାଶ କରିବାର ଅଧିକାର ଅଛି, ସେ ଅନ୍ୟ ମନୁଷ୍ୟର ସାଙ୍ଗ ଖୋଜିବାକୁ ନିଶ୍ଚୟ ଚାହିଁବ । ଯା'ର ଚିନ୍ତା କରିବାର ଶକ୍ତି ଅଛି, ସେ ତାର ଚିନ୍ତାଧାରା ପ୍ରକାଶ କରି-ବାର ସୁବିଧା ନ ପାଇଲେ ପାଗଳ ହୋଇଯିବାର ବହୁତ ସମ୍ଭାବନା । ମନୁଷ୍ୟର ସ୍ନେହ, ସହାନୁଭୂତି, ଦୟା, ରାଗ, ଅଭିମାନ ପ୍ରଭୃତି ନାନାପ୍ରକାର ଭାବଭଙ୍ଗୀ ଅଛି । ଏସବୁ କେବଳ ସମାଜ ଭିତରେ ପ୍ରକାଶ ହୋଇ ପାରିବ । ତେଣୁ ଏକୁଟିଆ ବଣ ଜଙ୍ଗଲ ଭିତରେ ରହିବା ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ ।

ଦ୍ୱିତୀୟରେ ନିଜର ରକ୍ଷାପାଇଁ ମଧ୍ୟ ମନୁଷ୍ୟ ଅନ୍ୟକୁ ଖୋଜେ । ପଶୁପକ୍ଷୀମାନେ ମଧ୍ୟ ଜନ୍ମ ଅବସ୍ଥାରେ ସେମାନଙ୍କ ମା'ମାନଙ୍କର ଲାଳନ ପାଳନ ଉପରେ ନିର୍ଭର କରନ୍ତି । କିନ୍ତୁ ଏହି ନିର୍ଭରତା ବେଶୀ ଦିନ ଦରକାର ପଡ଼େନାହିଁ । ଦୁଇ ତିନିମାସ ପରେ ଛୁଆଟି ଉଡ଼ିବୁଲି ନିଜର ଖାଦ୍ୟ ସଂଗ୍ରହ କରେ । ମା'କୁ ଆଉ ଖୋଜେନାହିଁ । ସେହିପରି ପଶୁମାନେ ୩।୪ ମାସ ମଧ୍ୟରେ ଆତ୍ମନିର୍ଭରଶୀଳ ହୋଇଯାଆନ୍ତି । କିନ୍ତୁ ମନୁଷ୍ୟ ପକ୍ଷରେ ଅଧୀନତା ବେଶୀ । ବର୍ଷ ବର୍ଷ ଧରି ଲାଳନ ପାଳନ ନ କଲେ ପିଲାଟି ନିଜ କଥା ନିଜେ ବୁଝି ପାରେ ନାହିଁ । ମଣିଷକୁ ହାତ ପାଇବାକୁ ତ ଯୁଗେ ଲାଗିଯିବ । ବାପ ମା'ଙ୍କର ସ୍ନେହ, ଅଜା ଆଈଙ୍କର ଆଦର

ସାଙ୍ଗପଙ୍ଗମାନଙ୍କ ସଙ୍ଗ ଭିତରେ ପିଲାଟି ବଢ଼େ । ମା' ତାର ଖାଦ୍ୟ ଯୋଗାଏ, ବାପା ତାକୁ ଖେଳ କରେ, ଅଜା ଆଈ ତାକୁ କଥା କହନ୍ତି, ଡାକ୍ତର କବିରାଜ ତାକୁ ଔଷଧ ଦିଅନ୍ତି । ଏମାନେହିଁ ସମାଜ । ସ୍ୱାଙ୍କୁ ଛାଡ଼ି ପିଲା କଣ ବଞ୍ଚି ପାରିବ ?

କେବଳ ସେତିକି ନୁହେଁ । ପିଲା ତ ଖାଲି ଖାଦ୍ୟ ଲୋଡ଼େ ନାହିଁ । ପିଲାର ମଧ୍ୟ ଏକ ମନ ଅଛି । ମନର ବିକାଶ ପାଇଁ ସମାଜ ମଧ୍ୟ ଦରକାର । ପିଲା କଥା କହି ଶିଖିବ, ପାଠପଢ଼ି ଜାଣିବ, ଗୋଟିଏ କଥାକୁ ବିଚାରକରି ଭଲ ମନ୍ଦ ବାଛିବ କହିବ—ଏସବୁ ଏକୁଟିଆ ସମ୍ଭବ ନୁହେଁ । ଅତେବ ଅକବର କେତେଗୁଡ଼ିଏ ଶିଶୁଙ୍କୁ ନେଇ ଜଙ୍ଗଲ ଭିତରେ ରଖି ଦେଇ ଥିଲେ । ଏମାନଙ୍କର କେବଳ ଖାଇବାର ବନ୍ଦୋବସ୍ତ କରାଗଲା । କିନ୍ତୁ ସେମାନେ କୌଣସି ଲୋକ ପାଖରେ ମିଶିବାର ସୁବିଧା ପାଇଲେ ନାହିଁ । ୩।୪ ବର୍ଷ ପରେ ଏମାନେ ସମସ୍ତେ ମୂକ ଓ ବଧୀର ପାଲଟିଗଲେ । ତେଣୁ ଜ୍ଞାନ ଅର୍ଜନ ପାଇଁ ସମାଜ ଯଥେଷ୍ଟାର୍ଥ । ପ୍ରଥମ ଯୁଗରେ ଲୋକଙ୍କର ବେଶୀ ଅଭାବ ନ ଥିଲା । ଜୀବନ ସମସ୍ୟା ଏତେ ଜଟିଳ ହୋଇ ନ ଥିଲା । ଲୋକମାନେ ବଣ ଜଙ୍ଗଲରେ ପଶୁ ପକ୍ଷୀ-ପରି ବୁଲି ଖାଦ୍ୟସଂଗ୍ରହ କରି ଚଳାଉଥିଲେ । ରାଜନୈତିକ, ସାମାଜିକ, ଅର୍ଥନୈତିକ ବା ସାଂସ୍କୃତିକ ସମସ୍ୟା ନେଇ ମୁଣ୍ଡ ଘୂରାଇବାକୁ ପଡୁ ନ ଥିଲା । ତଥାପି ସେତେବେଳେ ସମାଜ ଥିଲା । ଲୋକେ ଦଳ ଦଳ ହୋଇ ଏକାଠି ରହୁଥିଲେ ବା ଏଣେ ତେଣେ ବୁଲୁଥିଲେ । ନିଜର ସରଳ ଓ ସହଜଭାବ ବ୍ୟକ୍ତ କରିବାପାଇଁ ସମାଜ ମଧ୍ୟ ଦରକାର ପଡ଼ୁଥିଲା । ଆଜି ସେ ପୁରାତନ ଯୁଗର ପ୍ରାଚୁର୍ଯ୍ୟ ବା ସରଳତା ନାହିଁ । ପୂର୍ବକାଳରେ ଲୋକମାନେ ପ୍ରକୃତି ବାହୁବଳରେ ଲଢ଼େଇ କରୁଥିଲେ । ଆଜି ଆମ୍ଭମାନଙ୍କ ମନୁଷ୍ୟ

ବୁଦ୍ଧି ବିରୁଦ୍ଧରେ ଲଢ଼େଇ କରିବାକୁ ପଡ଼ୁଛି । ପ୍ରକୃତିର ଶକ୍ତିଠାରୁ ମନୁଷ୍ୟର ବୁଦ୍ଧି ଅତୁଳ ପ୍ରଖର, ଅତୁଳ ବଳୀୟାନ । ପ୍ରକୃତିକୁ ବୁଝିବା ସହଜ କିନ୍ତୁ ମନୁଷ୍ୟର ବୁଦ୍ଧିକୁ ବୁଝିବା ଭାରି କଷ୍ଟ । ଏଥିପାଇଁ ସଂଗଠିତ ଶକ୍ତି ଓ ସହଯୋଗ ଦରକାର । ତେଣୁ ପୁରାତନ ଯୁଗଠାରୁ ଆଜି ସମାଜର ଆବଶ୍ୟକତା ବେଶୀ ।

ସମାଜର ପ୍ରଗତି ସଙ୍ଗେ ସଙ୍ଗେ ଅସାଧୁତା ମଧ୍ୟ ବଢ଼ି ଚାଲିଛି । ସଭ୍ୟତା ନାଁରେ ଆମ୍ଭେମାନେ ଆଗେଇ ଚାଲିଛେ । ବିଜ୍ଞାନ ଚମତ୍କାର କରୁଛି । ନୂଆ ନୂଆ ଜନପଦର ଆବିଷ୍କାର ଓ ଉଦ୍ଭାବନ ହେଉଛି । ପାଣି, ପବନ, ପାହାଡ଼ ଓ ଜଙ୍ଗଲକୁ ଆମେ ଅତିକ୍ରମ କରୁଛୁ । କଥାରେ କହନ୍ତି ଯେ ସମୟ ଓ ସମୁଦ୍ର ନିହାତି କାହାକୁ ଅପେକ୍ଷା କରନ୍ତି ନାହିଁ । କିନ୍ତୁ ଆଜି ସମୟ ଓ ସମୁଦ୍ର ଆମ ବୋଲି ମାନୁଛି । ୫୦ ବର୍ଷ ତଳେ ଭାରତରୁ ଇଂଲଣ୍ଡ ଯିବାକୁ ଆମକୁ ମାସ ମାସ ଲାଗୁଥିଲା । ଆଜି ମୋଟେ ୨୦ ଘଣ୍ଟା ଲାଗୁଛି , ଆକାଶରେ ଉଡ଼ାଜାହାଜ ଉଡ଼ୁଛି, ସମୁଦ୍ରରେ ଜାହାଜ ଭାସୁଛି; ହିମାଳୟର ଏଭରେଷ୍ଟ ଶୃଙ୍ଗ ଉପରେ ତେନସିଂ ଚଢ଼ୁଛନ୍ତି । ମନୁଷ୍ୟର କି ବିରାଟ ସାଧନା ! କେବଳ ସେତିକି ନୁହେଁ । ଦୁଃସାଧ ରୋଗକୁ ମଧ୍ୟ ଆମେମାନେ ଆୟତ୍ତ କରି ପାରୁଛୁ । ଯାହା କି ମନୁଷ୍ୟ କେବେ ସ୍ୱପ୍ନରେ ଭାବି ନ ଥିଲା, ତାହା ଆଜି ସମ୍ଭବ ହୋଇ ପାରୁଛି । ଜୀବନକୁ ଉପଭୋଗ କରିବାପାଇଁ କି ବିରାଟ ସୁଯୋଗ । କିନ୍ତୁ ଏଥି ଭିତରେ ମନୁଷ୍ୟ ସଙ୍କୀର୍ଣ୍ଣତାର ଗଣ୍ଡି ଭିତରୁ ଉପରକୁ ଉଠି ପାରୁ-ନାହିଁ । ଆମେ ଆମର ପରିବେଷ୍ଟନୀକୁ ଜୟ କରିବାରେ ଲାଗିଛେ—କିନ୍ତୁ ନିଜକୁ ଜୟ କରିପାରୁ ନାହେଁ । ବିଜ୍ଞାନ ଆମ ଆଗରେ ଯେତିକି ଜ୍ଞାନ ଥୋଇଛି, ସେହି ଜ୍ଞାନକୁ ହିତକର କାର୍ଯ୍ୟରେ ଲଗାଇବା ପାଇଁ ଆମର ବିବେକ ନାହିଁ । ମନୁଷ୍ୟ ନିଜକୁ ଆଜି

ଯାହା କରନ୍ତି, ତାହା ଭାବିଲେ ମନରେ ଗଭୀର ଦୁଃଖ ଆସେ । ପ୍ରାଚୀନ ଯୁଗର ଲୋକମାନଙ୍କଠାରୁ ଆମେ ଯେ ଅଧିକ ଶିକ୍ଷିତ ଏଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ ସେମାନଙ୍କ ପାଖରେ ଯେଉଁ ନୈତିକତା ଓ ସାଧୁତାଟିକ ଥିଲା, ତା ଆମ ପାଖରେ ଅଛି କି ? ଗାଁର କୃଷକ ଖେତରେ ଫସଲ କାଟି ଫକାଇ ଦେଇ ଘରେ ନିଶ୍ଚିନ୍ତରେ ଶୋଇ ପାରୁଥିଲେ । ଚୋରିର କୌଣସି ଭୟ ନଥିଲା । କିନ୍ତୁ ଆଜି କାଲି ଖଳାର ଧାନ ଗଦାକୁ ବି ଚୋରେ ନେଉଛନ୍ତି । ସହର ମଫସଲ ସବୁଆଡ଼େ ଚୋରି ଡକାୟତି ଚାଲିଛି । ଏପରିକି [illegible] [illegible] ଶିଶୁଙ୍କ ଗଳାର ହାର ପାଇବା ପାଇଁ ଶିଶୁ ହତ୍ୟା ମଧ୍ୟ ସମ୍ଭବ ହୋଇ ପାରୁଛି । ତେଣୁ ନିଜକୁ ରକ୍ଷା କରିବାପାଇଁ ମନୁଷ୍ୟକୁ ଅନ୍ୟର ସାହାଯ୍ୟ ନେବାକୁ ପଡ଼େ । ଏଥିପାଇଁ ସମାଜ ଦରକାର । ଏହି ସମାଜ ସାହାଯ୍ୟରେ ମନୁଷ୍ୟ ଯେ କେବଳ ପ୍ରକୃତି ବିରୁଦ୍ଧରେ ଲଢ଼େଇ କରୁଛି ତା ନୁହେଁ । ମନୁଷ୍ୟର ଅସାଧୁତା ଓ ଅବିବେକତା ବିରୁଦ୍ଧରେ ମଧ୍ୟ ଲଢ଼େଇ କରିବାକୁ ପଡ଼ୁଛି । ଯେପରି କଣ୍ଟା ସାହାଯ୍ୟରେ କଣ୍ଟାକୁ ବାହାର କରାଯାଏ, ସେହିପରି ମନୁଷ୍ୟ ସାହାଯ୍ୟରେ ମନୁଷ୍ୟର ଅସାଧୁତାକୁ ମଧ୍ୟ ଦମନ କରାଯାଏ ।

ମନୁଷ୍ୟ ସ୍ୱାଧୀନ ହୋଇ ଜନ୍ମ ହୋଇଥିଲା ସତ—କିନ୍ତୁ ପରାଧୀନତାର ଶିକୁଳିରେ ବନ୍ଧାହୋଇ ରହିଛି । ସମାଜ ଏହି ପରାଧୀନତାର ଏକ ନିଦର୍ଶନ । କିନ୍ତୁ ମନୁଷ୍ୟ ଏହାକୁ ଏଡ଼ାଇଦେଇ ପାରିବ ନାହିଁ । ଆମେ ସଭ୍ୟତା ଯାହାକୁ କହୁ, ତା ଅର୍ଥ ଅନ୍ୟର ଚିନ୍ତାଧାରାକୁ ଜାଣିବା, ଅନ୍ୟ ସହିତ ମିଳାମିଶି ଚଳିବା । ଆର-ନୋଲ୍‌ଡଙ୍କ ଭାଷାରେ ଦୁନିଆରେ ଯେତେ କଥା କୁହାଯାଇଛି ଓ ଯେତେ କଥା ଚିନ୍ତା କରାଯାଇଛି, ତାର ସାର ଜାଣିବାହିଁ ସଭ୍ୟତା ।

ହିମାଳୟ ଭିତରେ ବସି ତପସ୍ୟା କଲେ ଏହି ସଂସ୍କୃତି ମିଳିବ ନାହିଁ । ମନୁଷ୍ୟର ମନ ଜାଣିବାକୁ ହେଲେ, ମନୁଷ୍ୟ ସହିତ ମିଳାମିଶି ଚଳିବା ଦରକାର । ଜଙ୍ଗଲ ଭିତରେ ଏକାଗ୍ର ରହି ସାଧନା କରିବା ଦେବତା ପକ୍ଷରେ ସମ୍ଭବ ହୋଇପାରେ—ମନୁଷ୍ୟ ପକ୍ଷରେ ନୁହେଁ । ତେଣୁ ଆରିଷ୍ଟଟଲ୍ କହୁଥିଲେ ଯେ ବଣ ଜଙ୍ଗଲ ଭିତରେ ଦେବତା କିମ୍ବା ପଶୁମାନେ ରହିପାରନ୍ତି—ମନୁଷ୍ୟ ପାଇଁ ସମାଜ ଦରକାର । ଏହି ସମାଜ ଆମକୁ ଖାଦ୍ୟ ଯୋଗାଏ । ଆମର ଶିକ୍ଷା ସଂସ୍କୃତିକୁ ପରିପୁଷ୍ଟ କରେ, ଆମର ସ୍ୱାବଲମ୍ବୀ ଓ ସ୍ୱାତନ୍ତ୍ର୍ୟକୁ ଚରିତାର୍ଥ କରାଏ ଓ ସର୍ବୋପରି ଆମର ଜୀବନର ସାଧନାକୁ ସଫଳ କରାଏ । ସମାଜର ଉନ୍ନତି ସଙ୍ଗେ ସଙ୍ଗେ ମନୁଷ୍ୟର ମଧ୍ୟ ଉନ୍ନତି ସମ୍ଭବ ହୋଇପାରେ । ଯେଉଁ ଦେଶର ସମାଜ ଯେତିକି ଉନ୍ନତ, ସେ ଦେଶର ଜନସାଧାରଣ ମଧ୍ୟ ସେତିକି ଉନ୍ନତ । କାରଣ ସମାଜ ସାହାଯ୍ୟରେ ହିଁ ଆମେ ଆମର ଉଚ୍ଚତ ଲକ୍ଷ୍ୟ ହାସଲ କରିପାରୁ—ଆମ ଗୁଣର ବିକାଶ କରିପାରୁ । ସମାଜ ଉନ୍ନତ ହେଲେ ମନୁଷ୍ୟର ଗୁଣ ପ୍ରକାଶ କରିବାକୁ ବେଶୀ ସୁଯୋଗ ମିଳେ । ମନୁଷ୍ୟ **standardised product** ନୁହେଁ । ପ୍ରତ୍ୟେକର ସ୍ୱତନ୍ତ୍ର ସତ୍ତା ଅଛି । କିଏ ଭଲ ନାଚି ପାରେ, କିଏ ଭଲ ଗାଇ ପାରେ, କିଏ ନୂତନ ଜିନିଷ ସୃଷ୍ଟି କରିପାରେ, କିଏ ବା ଭଲ ଖେଳିପାରେ, କିଏ ବା ଖାଲି ହସେଇ ପାରେ । ଏସବୁ ଗୁଣର ଅଭ୍ୟୁଦୟ ପାଇଁ ସମାଜରେ ସୁଯୋଗ ଥିବା ଗୃହ । ସମାଜର ଉନ୍ନତିରେ ଯେପରି ବ୍ୟକ୍ତିର ଉନ୍ନତି ହୁଏ, ସେହିପରି ବ୍ୟକ୍ତିର ଉନ୍ନତିରେ ମଧ୍ୟ ସମାଜର ଉନ୍ନତି ସମ୍ଭବ ହୁଏ । କାରଣ ବ୍ୟକ୍ତିକୁ ନେଇ ସମାଜ । ଯେଉଁ ଦେଶର ଲୋକମାନେ ଯେତେ ଶିକ୍ଷିତ ଓ ସଂସ୍କୃତ, ସେ ଦେଶର ସମାଜ ମଧ୍ୟ ସେତେ ଉନ୍ନତ

ଓ ପ୍ରଗତିଶୀଳ । କାରଣ ବ୍ୟକ୍ତିର ପ୍ରଭାବ ସମାଜକୁ ମଧ୍ୟ ନିୟନ୍ତ୍ରଣ କରେ । ଶ୍ରେଷ୍ଠ ଲୋକଙ୍କ ବିନା କୌଣସି ଦେଶରେ କେବେ ବିରାଟ କାମ ସମ୍ଭବ ହୋଇ ପାରି ନାହିଁ । ଅନେକ ସମୟରେ ଜଣେ ଜଣେ ଲୋକ ସ୍ୱ ସମାଜର ମାନଦଣ୍ଡ ସୃଷ୍ଟି କରି ଦେଇ ଯାଇଛନ୍ତି । ତାଙ୍କର ପ୍ରଭାବରେ ସମାଜର ଅଭ୍ୟୁତ୍ଥାନ ବା ପତନ ବଦଳି ଯାଇଛି । ଗାନ୍ଧିଜୀଙ୍କର ଜୀବନ ଉଦାହରଣ ତ ଆମ ଆଗରେ ଜାଜ୍ୱଲ୍ୟମାନ ହୋଇ ରହିଛି ।

ମନୁଷ୍ୟ ସମାଜର ନିୟମ କାନୁନରେ ବନ୍ଧା ସତ, କିନ୍ତୁ ସମାଜ ବ୍ୟକ୍ତିଠାରୁ ବଡ ନୁହେଁ । ସମାଜ ପାଇଁ ମନୁଷ୍ୟକୁ ନିଷ୍ପେଷିତ କରି ଦିଆଯାଇ ପାରେ ନାହିଁ । ମନୁଷ୍ୟଙ୍କ ହିତପାଇଁ ସମାଜ ଗଢ଼ା ଯାଇଛି । ଏହି ସମାଜ ମାଧ୍ୟମରେ ମନୁଷ୍ୟ ତାର ବ୍ୟକ୍ତିତ୍ୱର ବିକାଶ କରିବ, ତାର ଗୁଣର ପ୍ରକାଶ କରିବ । ସମାଜ ଏଥିପାଇଁ ଏକ ଅସ୍ତ୍ର । ଅନେକ ସମୟରେ ଆମେ ସମୂହ ତଥା ଜାତି ବ୍ୟକ୍ତିର ସ୍ୱାଧୀନତା ଲୋପ କରିବାକୁ ଚାହୁଁ । ହିଟଲରଙ୍କର ସ୍ଲୋଗାନ ଥିଲା ଯେ, ତମେ କିଛି ନୁହଁ—ତମର ଗୋଷ୍ଠୀ ବା ତମ ଲୋକ ସବୁ (You are nothing. Your people is all) ତାଙ୍କ ପାଇଁ ତୁମକୁ ତ୍ୟାଗ କରିବାକୁ ପଡିବ । ଏହି ଗୋଷ୍ଠୀ ମାଧ୍ୟମରେ ତୁମେ ଶିକ୍ଷା ଦୀକ୍ଷା ପାଇଛ, ଏହି ଗୋଷ୍ଠୀ ବା ସମାଜ ଯୋଗୁଁ ତମର ବଞ୍ଚିବା ସମ୍ଭବ ହୋଇଛି । ସମାଜ ଓ ସଂସ୍କୃତିର ତମ ଉପରେ ଅଧିକାର ଅଛି । ତେଣୁ ତା ଅନୁସାରେ ତୁମେ ପରିଚାଳିତ ହେବାକୁ ବାଧ୍ୟ । କେବଳ ହିଟଲର ନୁହେଁ—ସବୁପ୍ରକାର ଏକଛତ୍ରବାଦୀମାନେ ଏକଥା ବଡ଼ ଗମ୍ଭୀର ସ୍ୱରରେ ଘୋଷଣା କରି ଯାଇଛନ୍ତି । କିନ୍ତୁ ସେମାନେ ସବୁବେଳେ ଭୁଲି ଯାଉଛନ୍ତି ଯେ, ସମାଜ ଓ ବ୍ୟକ୍ତି ଓତଃପ୍ରୋତ ଭାବରେ ଜଡ଼ିତ ଏବଂ ବ୍ୟକ୍ତିର

ଜୀବନ୍ତ ପାର୍ଟି ନୁହଁ ସମାଜ । ସମାଜ ଓ ବ୍ୟକ୍ତି ଭିତରେ ଯଦି
କାହାକୁ ପ୍ରଥମ ସ୍ଥାନ ଦିଆଯାଏ, ତା'ହେଲେ ବ୍ୟକ୍ତି ହିଁ ସେହି
ସ୍ଥାନ ପାଇବ । କାରଣ ବ୍ୟକ୍ତିର ସମଷ୍ଟି ନ ହେଲେ ସମାଜ ଗଠନ
କରାଯାଇ ପାରିବ ନାହିଁ । ଆଇନଷ୍ଟାଇନଙ୍କ ଭାଷାରେ ଦଳ ବା
ଗୋଷ୍ଠୀର ଭାବିବା ବା ଚିନ୍ତା କରିବାର ଶକ୍ତି ନାହିଁ । ବ୍ୟକ୍ତି ହିଁ
ସମ୍ପଦ୍ [illegible] ସୃଷ୍ଟି କରେ—ନୂତନର ଅନୁସନ୍ଧାନ କରେ ।
ତେଣୁ ସତ୍ୟତାର ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ, ସ୍ରଷ୍ଟା
ସ୍ୱପ୍ନପ୍ରବଣ ମନୁଷ୍ୟ ହିଁ ସମାଜଠାରୁ ଅଧିକ ମୂଲ୍ୟବାନ । ଆଇନ-
ଷ୍ଟାଇନଙ୍କ ସମାଧାନକୁ ଅଧିକ ବିଶ୍ଳେଷଣ କରିବା ଅନାବଶ୍ୟକ ।

---

# ଆମ ଦେଶର ଶାସନ

୧୯୪୭ ମସିହା ପୂର୍ବରୁ ଆମେ ବ୍ରିଟିଶ ସରକାରଙ୍କର ଅଧୀନରେ ଥିଲେ । ଆମ ଦେଶରେ ପାର୍ଲିଅମେଣ୍ଟ ଥିଲା—ପ୍ରଦେଶରେ ଆସେମ୍ବ୍ଲି ଥିଲା । କିନ୍ତୁ ଆମ ହାତରେ ପୂରା କ୍ଷମତା ନ ଥିଲା । ପ୍ରଦେଶରେ ମନ୍ତ୍ରୀଶାସନ ପ୍ରଚଳିତ ହୋଇଥିଲେ ମଧ୍ୟ ମନ୍ତ୍ରୀମାନେ ବିଦେଶୀ ଗଭର୍ଣ୍ଣରଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ମନ୍ତ୍ରୀମାନଙ୍କ-ଠାରୁ ଗଭର୍ଣ୍ଣରଙ୍କ କ୍ଷମତା ଖୁବ୍ ଅଧିକ ଥିଲା । ୧୯୪୭ ମସିହାରେ ଆମକୁ ସ୍ୱାଧୀନତା ମିଳିଲା । ଆମ ଦେଶକୁ ଶାସନ କରିବାର ଆମେ ସାର୍ବଭୌମ ଅଧିକାର ପାଇଲେ । ତେଣୁ ନୂତନ ଏକ ସମ୍ବିଧାନ ଗଢ଼ାଗଲା । ସେହି ସମ୍ବିଧାନ ଅନୁସାରେ ଗଣତାନ୍ତ୍ରିକ ଭିତ୍ତିରେ ଆମ ଦେଶରେ ଶାସନ ପ୍ରଚଳନ ହେଲା । ଆଗରୁ ଆମ ଦେଶରେ ନିର୍ବାଚନ ହେଉଥିଲା । କିନ୍ତୁ ସମସ୍ତଙ୍କୁ ଭୋଟ କ୍ଷମତା ମିଳି ନଥିଲା । ଏହି ନୂତନ ସମ୍ବିଧାନ ଅନୁସାରେ ଭାରତର ପ୍ରତ୍ୟେକ ସାବାଳକ ଭୋଟ ଅଧିକାର ପାଇଲେ । ସାବାଳକ ଭୋଟ ପ୍ରଥା ଅନୁସାରେ ୧୯୫୧ ରେ ପ୍ରଥମ ଥର ପାଇଁ ନିର୍ବାଚନ ହୋଇ କେନ୍ଦ୍ର ଓ ରାଜ୍ୟ ମାନଙ୍କରେ ଜନସାଧାରଣଙ୍କର ପ୍ରତିନିଧିମାନେ କ୍ଷମତା ଅଧିକାର କଲେ । ସେହି ସମ୍ବିଧାନ ଅନୁସାରେ ଏବେ ଆମ ଦେଶରେ ଶାସନ ଚାଲିଛି ।

ଶାସନର ସାଧାରଣତଃ ତିନୋଟି ବିଭାଗ । ଗୋଟିଏ ବିଭାଗ ଶାସନ କାର୍ଯ୍ୟ ପରିଚାଳନା କରନ୍ତି । ଆଉ ଗୋଟିଏ ବିଭାଗ ଏହି ଶାସନ କାର୍ଯ୍ୟ ପରିଚାଳନା କରିବାପାଇଁ ଆଇନ ପ୍ରଣୟନ କରନ୍ତି । ତୃତୀୟ ବିଭାଗ ଆଇନର କୌଣସି ବିରୋଧ ହେଲେ, ତାର ବିଚାର

ସଭାର ସଂଖ୍ୟା-ଗରିଷ୍ଠ ଦଳର ଯେ ନେତା ହେବେ, ସେ ପ୍ରଧାନ-
ମନ୍ତ୍ରୀ ହେବେ । ରାଷ୍ଟ୍ରପତି ଏହି ସଂଖ୍ୟାଗରିଷ୍ଠ ଦଳର ନେତାଙ୍କୁ
ହିଁ ପ୍ରଧାନମନ୍ତ୍ରୀ ହେବାକୁ ଅନୁରୋଧ କରିବେ । ପ୍ରଧାନମନ୍ତ୍ରୀ
ତାଙ୍କର ସହକର୍ମୀମାନଙ୍କୁ ବାଛିବେ—ରାଷ୍ଟ୍ରପତି ଏହିମାନଙ୍କୁ
ନିଯୁକ୍ତ କରିବେ । ପ୍ରକୃତରେ ଆମ ଦେଶର ଶାସନ ପ୍ରଧାନମନ୍ତ୍ରୀ
ଓ ତାଙ୍କର ମନ୍ତ୍ରୀମଣ୍ଡଳ ଦ୍ୱାରା ପରିଚାଳିତ ହେବ । ତେଣୁ ଏହାକୁ
ମନ୍ତ୍ରୀମଣ୍ଡଳ ଶାସନ ବୋଲି ନିଶ୍ଚିନ୍ତରେ କୁହାଯାଇ ପାରେ ।
ରାଷ୍ଟ୍ରପତିଙ୍କୁ ଅଧିକ କ୍ଷମତା ନ ଦେବାପାଇଁ ପରୋକ୍ଷ ଭାବରେ ତାଙ୍କର
ନିର୍ବାଚନ ମଧ୍ୟ କରାଯାଉଛି । ସେ ୫ ବର୍ଷ ପାଇଁ ପାର୍ଲିଆମେଣ୍ଟ ଓ
ବ୍ୟବସ୍ଥାପକ ସଭାର ନିର୍ବାଚିତ ସଭ୍ୟମାନଙ୍କ ଦ୍ୱାରା ନିର୍ବାଚିତ
ହେବେ । ସଂବିଧାନକୁ ନିଜ ସୁବିଧାରେ ପ୍ରୟୋଗ କରି କ୍ଷମତା
ଅଧିକାର କରିବାକୁ ଚେଷ୍ଟା କଲେ, ସଂବିଧାନ ଲଙ୍ଘନ ଅଭି-
ଯୋଗରେ ପାର୍ଲିଆମେଣ୍ଟ ତାଙ୍କୁ ମଧ୍ୟ ରାଷ୍ଟ୍ରପତି ପଦରୁ ବାହାର କରି
ଦେଇପାରିବେ ।

ତେବେ ଏ କଥା ମାନିବାକୁ ହେବ ଯେ ରାଷ୍ଟ୍ରପତିଙ୍କ କ୍ଷମତା
ରାଷ୍ଟ୍ରପତିଙ୍କ ବ୍ୟକ୍ତିତ୍ୱର ପ୍ରଭାବ ଉପରେ ନିର୍ଭର କରିବ । ରାଷ୍ଟ୍ରପତି
ଶାସନ ପରିଚାଳନା ନ କଲେ ବି ଶାସନ ପରିଚାଳନା ଧାରା
ବଦଳାଇ ଦେଇ ପାରିବେ । ବିଶେଷତଃ ଜରୁରୀ ସମୟରେ
ରାଷ୍ଟ୍ରପତିଙ୍କୁ ଯେତେ କ୍ଷମତା ଦିଆଯାଇଛି, ସେଥିରେ ପାର୍ଲିଆମେଣ୍ଟର
କଡ଼ା କର୍ତ୍ତୃତ୍ୱ ଥିଲେ ମଧ୍ୟ ରାଷ୍ଟ୍ରପତି ଶାସନକୁ ଅନେକାଂଶରେ
ନିୟନ୍ତ୍ରଣ କରି ପାରିବେ । ଜରୁରୀ ଅବସ୍ଥାବେଳେ ରାଷ୍ଟ୍ରପତି
ଏକଚ୍ଛତ୍ର ଶାସନ ପ୍ରତିଷ୍ଠା କରିପାରିବେ ବୋଲି ଅନେକ ଭୟ ପ୍ରକାଶ
କରୁଛନ୍ତି । ଏ ବିଷୟରେ କୌଣସି ମତ ଦେବା ସହଜ ନୁହେଁ ।
କାରଣ ଦେଶର ଗଣତାନ୍ତ୍ରିକ ଭିତ୍ତି ଓ ଜନସାଧାରଣଙ୍କର

ରାଜନୈତିକ ଚେତନା ଉପରେ ଏହା ପୁରାପୁରି ନିର୍ଭର କରେ । ଯେଉଁ ଦେଶର ଲୋକେ ଯେଉଁ ଧରଣର ସରକାର ଚାହାନ୍ତି, ସେହି ଧରଣର ସରକାର ତାଙ୍କୁ ମିଳେ ।

ସେ ଯାହା ହେଉ ସାଧାରଣ ସମୟରେ ମନ୍ତ୍ରୀମଣ୍ଡଳ ଦ୍ୱାରା ଦେଶ ଶାସନ ଚାଲିବ, ଏଥିରେ କୌଣସି ସନ୍ଦେହ ନାହିଁ । ମନ୍ତ୍ରୀମାନେ ପାର୍ଲିଅମେଣ୍ଟର ସଭ୍ୟ । ପାର୍ଲିଅମେଣ୍ଟ ଦେଶ ଶାସନ ପାଇଁ ଆଇନ କରେ । ପାର୍ଲିଅମେଣ୍ଟର ସଭ୍ୟ ହିସାବରେ ମନ୍ତ୍ରୀ-ମାନେ ଏହି ଆଇନ କରିବାରେ ମୁଖ୍ୟ ଭାଗ ନିଅନ୍ତି । ପୁଣି ଶାସନ ପରିଚାଳନା ବିଭାଗର ଅଙ୍ଗ ହିସାବରେ ଏହି ଆଇନକୁ ମଧ୍ୟ କାର୍ଯ୍ୟକାରୀ କରନ୍ତି । ତେଣୁ ଏମାନେ ଶାସନରେ ଦୁଇ ପ୍ରକାର କାର୍ଯ୍ୟ କରନ୍ତି । ପାର୍ଲିଅମେଣ୍ଟ ଶାସନ ଚଳାଇବା ପାଇଁ ଆଇନ କରେ ଏବଂ ଯେଉଁମାନେ ଆଇନ ପ୍ରଣୟନ କରି ଶାସନ ପରିଚାଳନା କରନ୍ତି, ସେମାନଙ୍କୁ ମଧ୍ୟ ନିୟନ୍ତ୍ରଣ କରେ ।

କେନ୍ଦ୍ରସରକାରଙ୍କୁ ଯେଉଁ ସବୁ କ୍ଷମତା ଦିଆଯାଇଛି, ସେ ସବୁ ବିଷୟରେ ପାର୍ଲିଅମେଣ୍ଟ ଆଇନ କରିବା କଥା । ଆମ ଦେଶରେ ଫେଡେରାଲ୍ ସରକାର ଚାଲିଛି । ତେଣୁ ଫେଡେରାଲ ସରକାର ନୀତି ଅନୁସାରେ କେନ୍ଦ୍ରସରକାରଙ୍କ କ୍ଷମତା ଓ ରାଜ୍ୟ ସରକାରଙ୍କ କ୍ଷମତା ସମ୍ବିଧାନରେ ନିର୍ଦ୍ଦିଷ୍ଟ ଭାବରେ ବଣ୍ଟା ହୋଇ ଯାଇଛି । କେନ୍ଦ୍ରସରକାର ସାମରିକ ବିଭାଗ, ବୈଦେଶିକ ବ୍ୟାପାର, ପରମାଣୁ ଶକ୍ତି, ରେଲବାଇ, ପୋଷ୍ଟ, ଟେଲିଗ୍ରାଫ ଓ ମୁଦ୍ରା ପ୍ରଭୃତି ୯୭ଟି ବିଷୟରେ ଆଇନ କରି ପାରିବେ । ଏ ବିଷୟରେ ପାର୍ଲିଅମେଣ୍ଟ ଯେଉଁ ଆଇନ କରିବେ, ତାହା ରାଷ୍ଟ୍ରପତିଙ୍କ ମଞ୍ଜୁରୀ ପାଇଁ ଯିବ । ରାଷ୍ଟ୍ରପତିଙ୍କ ମଞ୍ଜୁରୀ ପାଇଲା ପରେ ଏହା କାର୍ଯ୍ୟକାରୀ ହେବ । ସେତେବେଳେ ସମସ୍ତେ ଏହି ଆଇନ ମାନିବାକୁ ବାଧ୍ୟ । କେନ୍ଦ୍ର

ସରକାରଙ୍କ ପରି ରାଜ୍ୟ ସରକାରମାନେ ମଧ୍ୟ କେତେ କ୍ଷମତା ପାଇଥାନ୍ତି । ଏଥିରେ ସେମାନଙ୍କର ପୂର୍ଣ୍ଣ ଅଧିକାର । ଉଦାହରଣ ସ୍ୱରୂପ ଶିକ୍ଷା, ସ୍ୱାସ୍ଥ୍ୟ, ପୋଲିସ୍, ଜେଲ୍, ସ୍ୱାୟତ୍ତ-ଶାସନ ପ୍ରଭୃତି ବିଷୟରେ ରାଜ୍ୟର ବ୍ୟବସ୍ଥାପକ ସଭାମାନେ ଆଇନ କରିବେ । କେନ୍ଦ୍ରସରକାର ସାଧାରଣ ସମୟରେ ଏଥିରେ ହସ୍ତକ୍ଷେପ କରି ପାରିବେ ନାହିଁ । କିନ୍ତୁ ଅଣ କେତେଗୁଡ଼ିଏ ବିଷୟରେ ଉଭୟ ସରକାରଙ୍କ ଅଧିକାର ମିଳିଛି । ଉଦାହରଣ ସ୍ୱରୂପ ବିବାହ, ଛାପଖାନା, ଶ୍ରମିକ ଅନୁଷ୍ଠାନ, ସାମାଜିକ ଓ ଅର୍ଥନୈତିକ ଯୋଜନା, ଦର ନିୟନ୍ତ୍ରଣ ପ୍ରଭୃତି ୪୭ଟି ବିଷୟରେ କେନ୍ଦ୍ରର ପାର୍ଲିଅମେଣ୍ଟ ଓ ରାଜ୍ୟର ବ୍ୟବସ୍ଥାପକ ସଭାମାନ ଆଇନ କରି ପାରିବେ । କିନ୍ତୁ ପାର୍ଲିଅମେଣ୍ଟର ଆଇନ ସହିତ ରାଜ୍ୟ ଆଇନରେ ବିରୋଧ ହେଲେ, କେନ୍ଦ୍ରଆଇନ ଚଳନ୍ତ ହେବ—ରାଜ୍ୟ ଆଇନ ନାକଚ ହୋଇଯିବ । ଜରୁରୀ ଅବସ୍ଥାରେ ମଧ୍ୟ ପାର୍ଲିଅମେଣ୍ଟ ରାଜ୍ୟପାଇଁ ଆଇନ କରି ପାରିବେ । ଏ ସବୁ ହେଲା ପାର୍ଲିଅମେଣ୍ଟର ଆଇନ କରିବା କ୍ଷମତା । କେନ୍ଦ୍ରସରକାରଙ୍କ ଯେପରି କେତେଗୁଡ଼ିଏ କାମ ଦିଆଯାଇଛି, ସେହିପରି ମଧ୍ୟ କେତେକ ରାଜସ୍ୱ ଦିଆଯାଇଛି । କେନ୍ଦ୍ରସରକାର ଶିଳ୍ପ ଓ ବାଣିଜ୍ୟସାମଗ୍ରୀ ଶୁଳ୍କ, ଉତ୍ପାଦନ କର, ଆୟକର ପ୍ରଭୃତି ଭିନ୍ନ ଭିନ୍ନ ରାଜସ୍ୱ ଆଦାୟ କରି ପାରିବେ । ଏସବୁ ରାଜସ୍ୱ କି ହାରରେ ଆଦାୟ ହେବ, ସେ ବିଷୟରେ ପାର୍ଲିଅମେଣ୍ଟ ଆଇନ କରିବେ । ପ୍ରତ୍ୟେକ ବର୍ଷ ପାର୍ଲିଅମେଣ୍ଟରେ ଯେଉଁ ବଜେଟ୍ ଉପସ୍ଥାପିତ ହୁଏ, ସେଥିରେ ଆୟ ଓ ଖର୍ଚ୍ଚର ହିସାବ ଦିଆଯାଏ ଓ କେତେ ପରିମାଣରେ ଆୟ ସଂଗ୍ରହ କରାଯିବ ଓ କି ହାରରେ ଖର୍ଚ୍ଚ କରାଯିବ, ସେ ସବୁ ମଧ୍ୟ ସ୍ଥିର କରାଯାଏ । ପାର୍ଲିଅମେଣ୍ଟ ଏହି ବଜେଟ୍ ପାଶ୍ ନ କଲେ, ସରକାର ଭାଙ୍ଗିଯିବ, ଆୟ ଆଦାୟ

ହୋଇ ପାରିବ ନାହିଁ କି ଖର୍ଚ୍ଚ ବରାଦର ବାଟ ଗଢ଼ିବ ନାହିଁ । ତେଣୁ ପାର୍ଲିଆମେଣ୍ଟର ଆଇନ କରିବା ଓ ଶାସନ ନିୟନ୍ତ୍ରଣ କରିବାରେ ଅସୀମ ଅଧିକାର ।

ପାର୍ଲିଆମେଣ୍ଟ ମତ ଅନୁଯାୟୀ ନ ଗଲେ ମନ୍ତ୍ରୀମଣ୍ଡଳ ଶାସନରେ ରହି ପାରିବେ ନାହିଁ । ମନ୍ତ୍ରୀମଣ୍ଡଳର ଯଦି କୌଣସି ଗଳତ ହୁଏ ଓ ପାର୍ଲିଆମେଣ୍ଟରେ ସେଥିପାଇଁ ମନ୍ତ୍ରୀମଣ୍ଡଳ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆସି ପାସ୍ ହୋଇଯାଏ, ତାହେଲେ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେବାକୁ ବାଧ୍ୟ । ଅବଶ୍ୟ ଅନାସ୍ଥା ପ୍ରସ୍ତାବ ପାସ୍ କରିବା ସବୁବେଳେ ସହଜ ନୁହେଁ । ପାର୍ଲିଆମେଣ୍ଟର ସଂଖ୍ୟାଗରିଷ୍ଠ ଦଳ ସାଧାରଣତଃ ମନ୍ତ୍ରୀମଣ୍ଡଳ ଗଢ଼ନ୍ତି । ତେଣୁ ମନ୍ତ୍ରୀମଣ୍ଡଳ ଭୁଲ କରୁଥିଲେ ବି ଦଳ ଅନୁସାରେ ଏହି ଦଳ ମନ୍ତ୍ରୀମଣ୍ଡଳକୁ ସମର୍ଥନ କରନ୍ତି । କିନ୍ତୁ ଅନାସ୍ଥା ପ୍ରସ୍ତାବ ପାସ୍ ନ ହୋଇ ପାରିଲେ ବି, ଅନାସ୍ଥା ପ୍ରସ୍ତାବ ସରକାର ବିରୁଦ୍ଧରେ ଜନମତ ସୃଷ୍ଟି କରେ । ଅଯଥା ନିର୍ବାଚନରେ ବିରୋଧୀ ଦଳକୁ ସାହାଯ୍ୟ କରେ । ଦ୍ୱିତୀୟରେ ପ୍ରଶ୍ନ ପଚାରି ମଧ୍ୟ ପାର୍ଲିଆମେଣ୍ଟ ସରକାରଙ୍କୁ ନିୟନ୍ତ୍ରଣ କରେ । ସରକାରଙ୍କର କୌଣସି ଯାଗାରେ କିଛି ଭୁଲ ହେଲେ ପାର୍ଲିଆମେଣ୍ଟରେ ସଭ୍ୟମାନେ ପ୍ରଶ୍ନ ପଚାରନ୍ତି, ଏହା ଖବର କାଗଜରେ ପ୍ରକାଶ ପାଏ । ଭୋଟରମାନେ ଜାଣିବାକୁ ସୁବିଧା ପା'ନ୍ତି । ଜନମତ ସରକାର ବିରୁଦ୍ଧରେ ଯାଏ । ତେଣୁ ସରକାର ଏହି ଭୁଲକୁ ସଂଶୋଧନ କରିବାକୁ ଚେଷ୍ଟା କରନ୍ତି । ତୃତୀୟରେ କୌଣସି ମନ୍ତ୍ରୀ ବିରୁଦ୍ଧରେ ମଧ୍ୟ ନିନ୍ଦା ପ୍ରସ୍ତାବ ଅଣାଯାଇ ପାରେ । ବ୍ୟକ୍ତିଗତ ଭାବରେ କୌଣସି ମନ୍ତ୍ରୀଙ୍କୁ ନିୟନ୍ତ୍ରଣ କରିବା ପାଇଁ ପାର୍ଲିଆମେଣ୍ଟର ଏ ଆଉ ଏକ ଅଧିକାର । କୌଣସି ଜଣେ ମନ୍ତ୍ରୀଙ୍କ ବିରୁଦ୍ଧରେ ନିନ୍ଦା ପ୍ରସ୍ତାବ ପାସ୍ ହୋଇଗଲେ ମଧ୍ୟ ସମୁଦାୟ

ମନ୍ତ୍ରୀମଣ୍ଡଳକୁ ଇସ୍ତଫା ଦେବାକୁ ପଡ଼ିବ । କାରଣ ମନ୍ତ୍ରୀମଣ୍ଡଳ ସମୂହ ଭାବରେ ପାର୍ଲିଅମେଣ୍ଟ ଆଗରେ ଦାୟୀ । ତେବେ ପ୍ରଧାନ ମନ୍ତ୍ରୀ ଉକ୍ତ ମନ୍ତ୍ରୀଙ୍କୁ ବିଦାୟ ଦେଇ ଅନ୍ୟ ମନ୍ତ୍ରୀମାନଙ୍କୁ ନେଇ ଏକ ମନ୍ତ୍ରୀମଣ୍ଡଳ ଗଢ଼ି ଶାସନ ମଧ୍ୟ ଚଳାଇ ପାରନ୍ତି । ଶେଷରେ ଦେଶରେ କୌଣସି ଗୋଟିଏ ଯାଗାରେ କିଛି ଗୁରୁତର ଘଟଣା ଘଟିଗଲେ ପାର୍ଲିଅମେଣ୍ଟରେ ସେଥିପାଇଁ ମୁଲତବୀ ପ୍ରସ୍ତାବ ମଧ୍ୟ ଆସିପାରେ । ଏହି ମୁଲତବୀ ପ୍ରସ୍ତାବ ଦ୍ୱାରା ଜନମତକୁ ଉକ୍ତ ଘଟଣା ପ୍ରତି ଆକୃଷ୍ଟ କରାଯାଇ ପାରେ । ଏହିପରି ନାନା ଉପାୟରେ ପାର୍ଲିଅମେଣ୍ଟ ଶାସନକୁ ନିୟନ୍ତ୍ରଣ କରେ ଓ ଅଧିକ ଭଲ ଶାସନ ପରିଚାଳନା କରେ । ତେଣୁ ପାର୍ଲିଅମେଣ୍ଟ ଶାସନକୁ [illegible] ଶାସନ ବୋଲି କହନ୍ତି—କାରଣ ଜନପ୍ରତିନିଧି ହିସାବରେ ପାର୍ଲିଅମେଣ୍ଟକୁ ଯେଉଁ ପ୍ରତିନିଧିମାନେ ନିର୍ବାଚିତ ହୋଇଯାନ୍ତି ସେମାନଙ୍କ ମତ ଅନୁସାରେ ଶାସନ ଚାଲେ ।

ଆମ ଦେଶରେ ଯେଉଁ ପାର୍ଲିଅମେଣ୍ଟ ଅଛି, ସେଥିରେ ଦୁଇଟି ସଭା । ଗୋଟିଏ ଲୋକସଭା ଓ ଅନ୍ୟଟି ରାଜ୍ୟସଭା । ରାଜ୍ୟ ସଭାରେ ୨୫୦ ଜଣ ସଭ୍ୟ ରହି ପାରିବେ । ଏଥିରୁ ୧୨ ଜଣଙ୍କୁ ରାଷ୍ଟ୍ରପତି ନିଯୁକ୍ତ କରିବେ । କଳା, ବିଜ୍ଞାନ, ସାମାଜିକ ସେବା ପ୍ରଭୃତିରେ ଯେଉଁମାନେ ଶୀର୍ଷ ସ୍ଥାନ ଅଧିକାର କରିଥିବେ, ସେମାନଙ୍କ ଭିତରୁ ଏହି ୧୨ ଜଣ ମନୋନୀତ ହେବେ । ଅନ୍ୟମାନେ ରାଜ୍ୟର ପ୍ରତିନିଧି । କେଉଁ ରାଜ୍ୟରୁ କେତେଜଣ ପ୍ରତିନିଧି ଆସିବେ ତାହା ସମ୍ବିଧାନରେ ଲେଖା ହୋଇ ରହିଛି । ଆମ ଓଡ଼ିଶାରୁ ୯ ଜଣ ପ୍ରତିନିଧି ରାଜ୍ୟସଭାରେ ଅଛନ୍ତି । ଏମାନେ ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟମାନଙ୍କଦ୍ୱାରା ନିର୍ବାଚିତ ହୋଇ ରାଜ୍ୟ ସଭାକୁ ସଭ୍ୟ ହୋଇ ଯାଇଛନ୍ତି । ରାଜ୍ୟସଭା କେବେ ଭଙ୍ଗ

ଯୋଗ୍ ପାରିବ ନାହିଁ । କିନ୍ତୁ ସଦସ୍ୟଙ୍କ ଦୁଇ ବର୍ଷରେ ଥରେ ରାଜ୍ୟସଭାର ଏକ ତୃତୀୟାଂଶ ସଦସ୍ୟ ଅବସର ଗ୍ରହଣ କରିବେ ।

ଲୋକସଭାରେ ୫୦୦ ଜଣ ସଭ୍ୟ ରହି ପାରିବେ । ଏମାନେ ପ୍ରତ୍ୟକ୍ଷ ଭାବରେ ସାବାଳକ ଭୋଟ ପ୍ରଥାରେ ନିର୍ବାଚିତ ହେବେ । ଲୋକସଭାର ଆୟୁଷ ୫ ବର୍ଷ । ଅର୍ଥାତ ପ୍ରତି ପାଞ୍ଚବର୍ଷରେ ଥରେ ଏଥିପାଇଁ ନିର୍ବାଚନ ହେବ । ଲୋକସଭା ଓ ରାଜ୍ୟସଭା ମଧ୍ୟରେ ଲୋକସଭାର କ୍ଷମତା ଅଧିକ । କାରଣ ଏହାର ପ୍ରତିନିଧିମାନେ ପ୍ରତ୍ୟକ୍ଷ ଭାବରେ ନିର୍ବାଚିତ ହୋଇଥାନ୍ତି । ଲୋକସଭାରେ କୌଣସି ଆଇନ ପାସ୍ ହେଲେ ରାଜ୍ୟସଭାକୁ ଯିବ, ରାଜ୍ୟ ସଭାରେ ପାସ୍ ହେଲେ ରାଷ୍ଟ୍ରପତିଙ୍କ ମଞ୍ଜୁରୀ ପାଇଁ ଯିବ । କିନ୍ତୁ ଲୋକସଭା ଓ ରାଜ୍ୟସଭା ଭିତରେ ମତଦ୍ୱୈଧ ହେଲେ, ରାଷ୍ଟ୍ରପତି ରାଜ୍ୟସଭା ଓ ଲୋକସଭାର ଏକ ମିଳିତ ବୈଠକ ଡାକି ପାରିବେ । ଏହି ମିଳିତ ବୈଠକରେ ଅଧିକ ସଭ୍ୟଙ୍କ ଭୋଟରେ ଆଇନ ପାସ୍ ହୋଇ ପାରିବ । ରାଜ୍ୟସଭାଠାରୁ ଲୋକସଭାରେ ଅଧିକ ସଭ୍ୟ ଥିବାରୁ, ଆଇନ କରିବାରେ ଲୋକସଭାର ଅଧିକାର ଅଧିକ ହୋଇ ରହିବ । ପୁଣି ବଜେଟ ବା ଅନ୍ୟ କୌଣସି ଅର୍ଥ ଜନିତ ଆଇନରେ ଲୋକସଭାର ଅଧିକାର ଅଧିକ ବୋଲି ସମ୍ବିଧାନରେ ଲେଖା ହୋଇ ରହିଛି । ଅର୍ଥ ଜନିତ ଆଇନ ଲୋକସଭାରେ ପ୍ରଥମେ ଆଗତ ହୋଇପାରିବ । ଲୋକସଭାରେ ଯାହା ସିଦ୍ଧାନ୍ତ ହେବ, ତାହା ରାଜ୍ୟ ସଭାକୁ ପଠାଯିବ । ରାଜ୍ୟସଭା ୧୪ ଦିନ ଭିତରେ ତାର ମତ ଲୋକସଭାକୁ ଜଣାଇବ । ଲୋକସଭା ଓ ରାଜ୍ୟସଭା ଭିତରେ ମତଦ୍ୱୈଧ ହେଲେ, ଲୋକସଭାର ମତ କାଏମ ରହିବ ।

ଗଣତନ୍ତ୍ର ଶାସନରେ ଆଇନ କରିବା ପାଇଁ ପାର୍ଲିଆମେଣ୍ଟକୁ ଯେ ଅଧିକାର ଦିଆଯାଏ, ତା କ୍ରମେ, ଏହି ଆଇନକୁ ଉପଯୁକ୍ତ

ମାର୍ଗରେ ସୁପ୍ରୟୋଗ କରିବା ପାଇଁ ଏକ ସ୍ୱାଧୀନ ବିଚାରାଳୟର ମଧ୍ୟ ବ୍ୟବସ୍ଥା କରାଯାଏ । ସ୍ୱାଧୀନ ବିଚାରାଳୟ ଗଣତନ୍ତ୍ରର ଅଭିଭାବକ ପରି । ବିଚାର ବିଭାଗ ବ୍ୟକ୍ତିର ସ୍ୱାଧୀନତା ଓ ଅଧିକାରକୁ ରକ୍ଷା କରେ । ପୁଣି ଏକ ଫେଡେରାଲ୍ ରାଷ୍ଟ୍ରରେ କେନ୍ଦ୍ରସରକାର ଓ ପ୍ରାନ୍ତୀୟସରକାର ଭିତରେ ଅଧିକାର ନେଇ ମତଦ୍ୱୈଧ ହେଲେ, ବିଚାର ବିଭାଗ ଏହାର ମୀମାଂସା କରେ । ସେହି ଦୃଷ୍ଟିରୁ ଆମର ସମ୍ବିଧାନରେ ସ୍ୱତନ୍ତ୍ର ବିଚାର ବିଭାଗର ବ୍ୟବସ୍ଥା କରାଯାଇଛି । ବିଚାର ବିଭାଗର ଚୂଡ଼ାନ୍ତ କ୍ଷମତା ସୁପ୍ରିମ କୋର୍ଟ ହାତରେ । ସୁପ୍ରିମ୍ କୋର୍ଟରେ ଜଣେ ପ୍ରଧାନ ବିଚାରପତି ଓ ଅନ୍ୟ ୭ ଜଣ ବିଚାରପତି ରହିବାର କଥା । ଏହି ବିଚାରପତି ମାନଙ୍କୁ ରାଷ୍ଟ୍ରପତି ନିଯୁକ୍ତ କରିବେ । ରାଷ୍ଟ୍ରପତି ଏମାନଙ୍କୁ ନିଯୁକ୍ତ କଲେ ମଧ୍ୟ ମନଇଚ୍ଛା ତାହାଙ୍କୁ ମନ ତାଙ୍କୁ ବିଚାରପତି ହଟାଇବାର ଅଧିକାର ତାଙ୍କର ନାହିଁ । ସୁପ୍ରିମ କୋର୍ଟର ବିଚାରପତି ହେବାପାଇଁ କେତେକ ଯୋଗ୍ୟତା ଥିବା ଦରକାର । ସେ କଥା ସମ୍ବିଧାନରେ ଉଲ୍ଲେଖ ହୋଇଛି । ତା ବ୍ୟତୀତ ରାଷ୍ଟ୍ରପତି ଯେ କୌଣସି ଜଣେ ବିଚାର ପତିଙ୍କୁ ନିଯୁକ୍ତ କଲାବେଳେ ପ୍ରଧାନ ବିଚାରପତିଙ୍କୁ ପରାମର୍ଶ କରିବେ —ପ୍ରଧାନ ବିଚାରପତିଙ୍କୁ ନିଯୁକ୍ତ କଲାବେଳେ ଅନ୍ୟାନ୍ୟ ବିଚାର-ପତି ମାନଙ୍କର ମତ ଲୋଡ଼ିବେ । ପୁଣି ଏମାନଙ୍କୁ ବହିଷ୍କାର କରିବାର ଅଧିକାର ରାଷ୍ଟ୍ରପତିଙ୍କର ନାହିଁ । ସେଥିପାଇଁ ସମ୍ବିଧାନରେ କେତେକ ସ୍ୱତନ୍ତ୍ର ବ୍ୟବସ୍ଥା ରହିଛି । ପୁଣି ଜଣେ ବିଚାରପତି ହୋଇ ସାରିଲାପରେ, ତାଙ୍କର ଦରମା ବା ସୁବିଧା ଓ ସୁଯୋଗରେ କୌଣସି ପ୍ରକାର ହସ୍ତକ୍ଷେପ କରାଯାଇ ପାରିବ ନାହିଁ । ଏଥିରୁ ଦେଖାଯିବ ଯେ ସମ୍ବିଧାନରେ ଭାରତର ବିଭାଗକୁ ସ୍ୱାଧୀନତା ଦିଆଯାଇଛି । ତେଣୁ ଏମାନେ ନିର୍ଭୟ ଭାବରେ ସମ୍ବିଧାନକୁ

ସର୍ତ୍ତରେ ନାଗର ମତ ଦେଇ ପାରିବେ । ନାଗର ସୁବିଧା ଓ ସୁଯୋଗ ପାର୍ଟି ସରକାରଙ୍କୁ ଗମ୍ଭ କରି ସମର୍ଥନ କରିବା ଦରକାର ପଡ଼ିବ ନାହିଁ । ବିଚାର ବିଭାଗ ପାଇଁ ଯେଉଁ ଟଙ୍କା ଖର୍ଚ୍ଚ ହୁଏ, ତା ମଧ୍ୟ ପାର୍ଲିଆମେଣ୍ଟ ନିୟନ୍ତ୍ରଣ କରି ପାରିବ ନାହିଁ । ଯୁକ୍ତରେ ଭାରତୀୟ ସମ୍ବିଧାନରେ ବିଚାର ବିଭାଗକୁ ଅନେକ କ୍ଷମତା ଦିଆଯାଇଛି । ଅତଏବ ବିଚାର ବିଭାଗ ପରି ଏମାନେ ପାର୍ଲିଆମେଣ୍ଟର ଆଇନକୁ ମଧ୍ୟ ବେଆଇନ ବୋଲି ଘୋଷଣା କରି ପାରିବେ । ଯଦି ପାର୍ଲିଆମେଣ୍ଟର କୌଣସି ଆଇନର ସମ୍ବିଧାନ ବନ୍ଧରେ ଯାଏ, ତାହେଲେ ଏହା ବେଆଇନ ବୋଲି ଘୋଷଣା କରାଯିବ । ଦ୍ୱିତୀୟରେ ସୁପ୍ରିମ କୋର୍ଟ ସମ୍ବିଧାନ ଉପରେ ଯେଉଁ ବ୍ୟାଖ୍ୟା ଦେବେ, ତାହାକୁ ଚୂଡ଼ାନ୍ତ ବୋଲି ଧରନେବାକୁ ପଡ଼ିବ । ସେଥିରେ ଆଉ ପ୍ରଶ୍ନ କରିବାର କାହାର ଅଧିକାର ନାହିଁ । ସୁପ୍ରିମ୍ କୋର୍ଟ ଯେଉଁ ଆଇନ ଜାରି କରିବେ, ଅନ୍ୟ କୋର୍ଟମାନେ ତାକୁ ମାନିବାକୁ ବାଧ୍ୟ । ଭାରତୀୟ ନାଗରିକ ମାନଙ୍କର ମୌଳିକ ଦାବୀ ରକ୍ଷା କରିବା ପାଇଁ ସୁପ୍ରିମ କୋର୍ଟ ମଧ୍ୟ ଆଦେଶ ଜାରି କରି ପାରନ୍ତି ।

ଆମେ ଏ ପର୍ଯ୍ୟନ୍ତ ମୁଖ୍ୟ ଭାବରେ ସୁପ୍ରିମ କୋର୍ଟ କଥା କହୁଛେ । ଭାରତର ବିଚାରର ହାଇକୋର୍ଟ ମଧ୍ୟ ଏକ ଅଙ୍ଗ । ସମ୍ବିଧାନ ଅନୁସାରେ ପ୍ରତ୍ୟେକ ରାଜ୍ୟରେ ଏକ ଏକ ହାଇକୋର୍ଟ ରହିବାର କଥା । ସୁପ୍ରିମ କୋର୍ଟ ପରି ହାଇକୋର୍ଟର ବିଚାରପତି-ମାନେ ରାଷ୍ଟ୍ରପତିଙ୍କ ଦ୍ୱାରା ନିଯୁକ୍ତ ହେବେ । ପ୍ରଧାନ ବିଚାରପତି ନିଯୁକ୍ତ ବେଳେ ସୁପ୍ରିମ କୋର୍ଟର ପ୍ରଧାନ ବିଚାରପତିଙ୍କ ପରାମର୍ଶ କରାଯିବ—ଅନ୍ୟ ବିଚାରପତି ନିଯୁକ୍ତ ବେଳେ ହାଇକୋର୍ଟର ପ୍ରଧାନ ବିଚାରପତିଙ୍କ ପରାମର୍ଶ ନିଆଯିବ । ଏମାନଙ୍କ ଦରମା ଓ ଖର୍ଚ୍ଚ ମଧ୍ୟ ରାଜ୍ୟର ବ୍ୟବସ୍ଥାପକ ସଭା ନିୟନ୍ତ୍ରଣ କରି ପାରନ୍ତେ

ନାହିଁ । ଏମାନଙ୍କର ସୁବିଧା ଓ ସୁଯୋଗ ଶାସନ ବିଭାଗର ମନ ଅନୁଯାୟୀ ବଦଳି ପାରିବ ନାହିଁ । ହାଇକୋର୍ଟକୁ ମଧ୍ୟ ଅନେକ କ୍ଷମତା ଦିଆଯାଇଛି । ପ୍ରଥମରେ ମୌଳିକ ଦାବୀ କାର୍ଯ୍ୟକାରୀ କରିବାପାଇଁ ଆଦେଶ ଜାରି କରିବା, ଦ୍ୱିତୀୟରେ ରାଜ୍ୟର ଦେଓ୍ୟାନୀ ଅଦାଲତ ତଦାରଖ କରିବା ଓ ତୃତୀୟରେ ତଳକୋର୍ଟର ମକଦମା ଯଦି ବାହାର କରିବା ପ୍ରଭୃତି ଅନେକ କ୍ଷମତା ହାଇକୋର୍ଟର ଅଛି । ଭାରତରେ ବିଚାର ବିଭାଗ ଏକ ସୂତ୍ରରେ ବନ୍ଧା । ତଳ କୋର୍ଟଠାରୁ ଆରମ୍ଭ କରି ହାଇକୋର୍ଟ ଓ ସୁପ୍ରିମ୍‌କୋର୍ଟ ପର୍ଯ୍ୟନ୍ତ ଯୋଗସୂତ୍ର ରହିଛି । ତଳ କୋର୍ଟମାନ ହାଇକୋର୍ଟଠାରୁ ସ୍ୱତନ୍ତ୍ର ନୁହେଁ କି ହାଇକୋର୍ଟ ସୁପ୍ରିମକୋର୍ଟଠାରୁ ସ୍ୱତନ୍ତ୍ର ନୁହେଁ । ଯେପ ଦେଶ ସେପରି ଏକ, ଶାସନ ବିଭାଗ ମଧ୍ୟ ଏକ । ଦେଶରେ ଯେତେବେଳେ ସରକାର ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ, କେନ୍ଦ୍ର-ସରକାରଙ୍କର କ୍ଷମତା ଅଧିକ । ବିଚାର ବିଭାଗରେ ମଧ୍ୟ କ୍ଷମତା ବାହୁଲ୍ୟ ହୋଇନାହିଁ । ପୁଣି ଯଦି ଭାରତୀୟ ଲୋକମାନଙ୍କ କଥା ବିଚାର କରାଯାଏ, ତା ହେଲେ ଏ କଥା କୁହାଯିବ ଯେ ସେମାନେ ଓଡ଼ିଶାର ନାଗରିକ ନୁହନ୍ତି ବା ବଙ୍ଗଳାର ନାଗରିକ ନୁହନ୍ତି । ସେମାନେ ସମୁଦାୟ ଭାରତର ନାଗରିକ । ଆମର ସଂବିଧାନ ଅନୁଯାୟୀ ଆପଣ ଓଡ଼ିଶା ରାଜ୍ୟର ବାସିନ୍ଦା ହେଲେ ବି ଭାରତର ନାଗରିକ ।

ଆଉ ଗୋଟିଏ କଥା । ଆମର ସଂବିଧାନରେ ନାଗରିକମାନଙ୍କ ପାଇଁ କେତେକ ମୌଳିକ ଦାବୀର ବ୍ୟବସ୍ଥା କରାଯାଇଛି । ଏହି ଦାବୀ ସରକାର ପୂରଣ କରିବାପାଇଁ ବାଧ୍ୟ । ମୌଳିକ ଦାବୀ ସରକାରୀ କ୍ଷମତାକୁ ନିୟନ୍ତ୍ରଣ କରେ । କ୍ଷମତା ଏକ ମୋହ । ଯେ ଯେତେ କ୍ଷମତା ପାଆନ୍ତି, ସେ ସେତେ ଅଧିକ କ୍ଷମତା ଚାହାନ୍ତି ।

ତେଣୁ ସବୁବେଳେ ସରକାର ନିଜର କାର୍ଯ୍ୟ କରିବା ପାଇଁ ଅଧିକ କ୍ଷମତା ଗ୍ରହଣ କରିବା ସ୍ୱାଭାବିକ । କିନ୍ତୁ ଏହି ମୌଳିକ ଦାବୀ ସରକାରୀ କ୍ଷମତାପ୍ରୟୋଗକୁ ସୀମିତ କରେ । ଘୋଡ଼ା ସବାର ଘୋଡ଼ାର ଲଗାମ ଧରି ଯେପରି ତାର ଗତିକୁ ନିୟନ୍ତ୍ରଣ କରେ, ସେହିପରି ମୌଳିକ ଦାବୀ ସରକାରୀ କ୍ଷମତାକୁ ରୋକିବାକୁ ଚେଷ୍ଟା କରେ । କେବଳ ସେତିକି ନୁହେଁ—ବ୍ୟକ୍ତିର ବିକାଶପାଇଁ ଏହା ମଧ୍ୟ ସୁଯୋଗ ଦିଏ । ମୌଳିକ ଦାବୀର ଖିଲାପ ହେଲେ ସୁପ୍ରିମ କୋର୍ଟ ଓ ହାଇକୋର୍ଟ ମୌଳିକ ଦାବୀ ପ୍ରତିଷ୍ଠା କରିବା ପାଇଁ ଆଦେଶନାମା ଜାରି କରନ୍ତି । ତେଣୁ ମୌଳିକ ଦାବୀ ବିରୁଦ୍ଧରେ ଯିବାର ଅଧିକାର ସରକାରଙ୍କର ନାହିଁ । ବିରୁଦ୍ଧରେ ଗଲେ ସରକାରଙ୍କ ବିରୁଦ୍ଧରେ ବିଚାରାଳୟରେ ମକଦ୍ଦମା ଚଳିପାରିବ । ତେଣୁ ଯେଉଁମାନେ ଗଣତନ୍ତ୍ରରେ ବିଶ୍ୱାସ କରନ୍ତି ଓ ବ୍ୟକ୍ତିର ବିକାଶ ପାଇଁ ଧ୍ୟାନ ଦିଅନ୍ତି, ସେମାନେ ଏହି ମୌଳିକ ଦାବୀକୁ ସାଦରେ ସ୍ୱାଗତ କରିବେ । ମୌଳିକ ଦାବୀ ଅନୁସାରେ ଆଇନ ଆଗରେ ପ୍ରତ୍ୟେକ ଲୋକ ସମାନ । ତେଣୁ ଶାସନରେ ବ୍ୟକ୍ତି ଓ ବ୍ୟକ୍ତି ଭିତରେ ପାତର ଅନ୍ତର କରାଯାଇ ପାରିବ ନାହିଁ । ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ଲୋକ ସମାନ ସୁବିଧା ଓ ସୁଯୋଗ ପାଇବେ । କେବଳ ଅନୁନ୍ନତ ଜାତିମାନଙ୍କର ଉନ୍ନତି ପାଇଁ ସମ୍ବିଧାନରେ ସେମାନଙ୍କୁ କେତେକ ସ୍ୱତନ୍ତ୍ର ସୁବିଧା ଦିଆ ଯାଉଛି । ଏଥିରେ ବୋଧହୁଏ କେହି ଆପତ୍ତି କରିବେ ନାହିଁ । ଆମ ଦେଶରେ ମଧ୍ୟ ଗୋଟିଏ ଜାତି ଅଚ୍ଛୁଆ ହୋଇ ରହିଛନ୍ତି । ଏହା ଦେଶ ପକ୍ଷରେ ଏକ କଳଙ୍କ ହୋଇ ରହିଛି । ସୁଖର କଥା ଯେ ଅସ୍ପୃଶ୍ୟତା ଦୂର କରିବା ପାଇଁ ସମ୍ବିଧାନରେ ବ୍ୟବସ୍ଥା ହୋଇଛି । ଯେ ପର୍ଯ୍ୟନ୍ତ ଅସ୍ପୃଶ୍ୟତା ଆମ ସମାଜରୁ ଦୂର ନ ହୋଇଛି, ସେ ପର୍ଯ୍ୟନ୍ତ ସାମାଜିକ ସମାନତା

ଏମ ଦେଶରେ ପ୍ରତିଷ୍ଠା ହୋଇ ପାରିବ ନାହିଁ । ବ୍ୟକ୍ତିଗତ ସ୍ୱାଧୀନତା ଗଣତନ୍ତ୍ରର ଭିତ୍ତି । ସ୍ୱାଧୀନ ଭାବରେ ଚିନ୍ତା କରିବା, ସ୍ୱାଧୀନ ଭାବରେ ମତ ପ୍ରକାଶ କରିବା, ସ୍ୱାଧୀନ ଭାବରେ ନିଜର ଧର୍ମ ଅନୁସାରେ ଚଳିବା, ନିଜର ସମ୍ପତ୍ତି ଓ ସମ୍ପଦାକୁ ଉପଭୋଗ କରିବା ପ୍ରଭୃତି ଅନେକ ମୌଳିକ ଅଧିକାର ଆମର ମୌଳିକ ଦାବୀ ଭାବରେ ସଂରକ୍ଷିତ କରାଯାଇଛି । ଫଳରେ ଆମର ସମ୍ବିଧାନର ମହତ୍ତ୍ୱ ବଢ଼ିଛି । ପ୍ରତ୍ୟେକ ଲୋକର ସମ୍ପତ୍ତି ଉପରେ ମଧ୍ୟ ତାର ଅଧିକାର ମାନି ନିଆଯାଇଛି । ବିନା ଆଇନରେ କାହାକୁ ତାହାର ସମ୍ପତ୍ତିରୁ ଉଚ୍ଛେଦ କରି ଦେଇ ପାରିବ ନାହିଁ । ସାଧାରଣ ଉଦ୍ଦେଶ୍ୟରେ ତାହାର ସମ୍ପତ୍ତି ଅଧିକାର କରିବା ଦରକାର ପଡ଼ିଲେ, ସେଥିପାଇଁ ଉପଯୁକ୍ତ କ୍ଷତିପୂରଣ ଦେବାକୁ ହେବ । ବିନାକାରଣରେ କାହାକୁ ଅଟକ କରାଯାଇ ପାରିବ ନାହିଁ କି ଅନିର୍ଦ୍ଦିଷ୍ଟ କାଳ ପାଇଁ ନଜରବନ୍ଦ ରଖା ଯାଇ ପାରିବ ନାହିଁ । ଏହି ସବୁ ମୌଳିକ ଦାବୀ ସହଜରେ ବଦଳା ଯାଇ ପାରିବ ନାହିଁ । କାରଣ ସମ୍ବିଧାନ ପରିବର୍ତ୍ତିତ ନ ହେଲେ, ମୌଳିକ ଦାବୀର ମଧ୍ୟ ପରିବର୍ତ୍ତନ ହେବ ନାହିଁ । ସମ୍ବିଧାନ ପରିବର୍ତ୍ତନ କରିବା ପାଇଁ ଯେଉଁ ବ୍ୟବସ୍ଥା ରଖା ଯାଇଛି, ତାହା ଏତେ ସହଜ ନୁହେଁ ଯେ, ଯେତେବେଳେ ଇଚ୍ଛା ସେତେବେଳେ ସମ୍ବିଧାନ ପରିବର୍ତ୍ତିତ ହୋଇ ପାରିବ । ମୌଳିକ ଦାବୀ ପ୍ରଭୃତି ସରକାରଙ୍କୁ ଆଜି ମଧ୍ୟ କେତେଗୁଡ଼ିଏ ନିର୍ଦ୍ଦେଶ ନାମା ଦିଆ ଯାଇଛି । ସରକାର ଦେଶରେ ଅର୍ଥନୈତିକ ସମତା ପ୍ରତିଷ୍ଠା କରିବାକୁ ଚେଷ୍ଟା କରିବେ, ବେକାରଙ୍କୁ କାମ ଯୋଗାଇବେ, ଲୋକଙ୍କୁ ଖାଦ୍ୟ ଯୋଗାଇବେ, ସମାନ କାମ ପାଇଁ ସମାନ ମଜୁରିର ବ୍ୟବସ୍ଥା କରିବେ, ବାଳକ ବାଳିକା ମାନଙ୍କ ପାଇଁ ବିନା ବେତନରେ ବାଧ୍ୟତା ମୂଳକ ଶିକ୍ଷାର ବ୍ୟବସ୍ଥା କରିବେ ଇତ୍ୟାଦି

ଅନେକ ନିର୍ଦ୍ଦେଶ ନାମା ସମ୍ବିଧାନରେ ଯୋଗ କରାଯାଇଛି । ଏହାର ଅଳ୍ପ ହେଲେ କୌଣସି ଲୋକ ସରକାରଙ୍କ ବିରୁଦ୍ଧରେ ଅଦାଲତରେ ମକଦ୍ଦମା କରି ପାରିବ ନାହିଁ । ଏ ସବୁ କଥା ପୂରଣ କରିବା ପାଇଁ ସରକାର ବାଧ୍ୟ ନୁହନ୍ତି । ତେବେ ଏହି ସବୁ ଯେଉଁ ନିର୍ଦ୍ଦେଶ ସରକାରଙ୍କୁ ସମ୍ବିଧାନରେ ଦିଆଯାଇଛି, ତାକୁ ଅନ୍ତତଃ ପୂରଣ କରିବା ପାଇଁ ଉଦ୍ୟମ ହେବ ବୋଲି ଆଶା କରାଯାଇଛି । ଅଧିକାର ଅର୍ଥରେ ଏହି ନିର୍ଦ୍ଦେଶନାମାର ମୂଲ୍ୟ କିଛି ନ ହେଲେ ବି, ନାଗରିକ ଶିକ୍ଷା ଓ ସରକାରୀ ଦାୟିତ୍ୱ ଦୃଷ୍ଟିରେ ଏହାର ମୂଲ୍ୟ ଯଥେଷ୍ଟ । ପ୍ରକୃତରେ ମୌଳିକ ଦାବୀ ଓ ନିର୍ଦ୍ଦେଶନାମା ଆମର ସମ୍ବିଧାନକୁ ଏକ ଗଣତାନ୍ତ୍ରିକ ସମ୍ବିଧାନ ବୋଲି ପରିଚିତ କରାଇ ପାରନ୍ତି । ଏହା ଫଳରେ ଆମ ଦେଶର ଶାସନ ଗଣତାନ୍ତ୍ରିକ ନୀତି ଅନୁସାରେ ପରିଚାଳିତ ହେବ ବୋଲି ଆଶା କରାଯାଏ ।

---

## ରାଜ୍ୟ ଶାସନ

ଭାରତରେ ତିନି ପ୍ରକାର ରାଜ୍ୟ ଅଛି । କ ଶ୍ରେଣୀ ରାଜ୍ୟ, ଖ ଶ୍ରେଣୀ ରାଜ୍ୟ ଓ ଗ ଶ୍ରେଣୀ ରାଜ୍ୟ । ଏ ସବୁ ମିଶି ଆମର ମୋଟରେ ୨୭ଟି ରାଜ୍ୟ । କ ଶ୍ରେଣୀରେ ଦଶଗୋଟି ରାଜ୍ୟ । ଓଡ଼ିଶା ଏହି କ ଶ୍ରେଣୀ ରାଜ୍ୟର ଅନ୍ତର୍ଭୁକ୍ତ । ଏ ସବୁ କ ଶ୍ରେଣୀ ରାଜ୍ୟରେ ଯେଉଁ ପ୍ରକାର ଶାସନ ପ୍ରଚଳିତ ଅଛି, ତାହା ମୋଟାମୋଟି ଭାବରେ କେନ୍ଦ୍ର ଶାସନ ପରି । ପ୍ରତ୍ୟେକ ରାଜ୍ୟରେ ଜଣେ ଜଣେ ଗଭର୍ଣ୍ଣର ଅଛନ୍ତି । ସେ ହେଉଛନ୍ତି ରାଜ୍ୟ ଶାସନର ମୁଖ୍ୟ କର୍ତ୍ତା । ସେ ରାଷ୍ଟ୍ରପତିଙ୍କ ଦ୍ୱାରା ସାଧାରଣତଃ ୫ବର୍ଷ ପାଇଁ ନିଯୁକ୍ତ ହୁଅନ୍ତି । ସେ ରାଷ୍ଟ୍ରପତିଙ୍କପାଖରେ ଦାୟୀ । ଦରକାର ପଡ଼ିଲେ ରାଷ୍ଟ୍ରପତି ତାଙ୍କୁ ବରଖାସ୍ତ କରି ପାରିବେ । ରାଜ୍ୟର ରାଜ୍ୟପାଳଙ୍କ ପାଇଁ ଯେଉଁ ଯୋଗ୍ୟତା ଉଲ୍ଲେଖ କରାଯାଇଛି ସେଥିରେ ଲେଖା ଅଛି ଯେ, ଭାରତୀୟ ନାଗରିକ ହୋଇଥିବେ ଓ ଯାହାଙ୍କର ବୟସ ୩୫ ବର୍ଷ ବା ତାଠାରୁ ଅଧିକ ହୋଇଥିବ, ସେ କେବଳ ରାଜ୍ୟପାଳ ରୂପେ ମନୋନୀତ ହୋଇ ପାରିବେ । ରାଜ୍ୟପାଳ ପାର୍ଲିଆମେଣ୍ଟ ବା ରାଜ୍ୟର ବ୍ୟବସ୍ଥାପକ ସଭାର ସଭ୍ୟ ହୋଇ ପାରିବେ ନାହିଁ । ରାଜ୍ୟର ଶାସନ କ୍ଷମତା ତାଙ୍କର ହସ୍ତରେ ନ୍ୟସ୍ତ ରହିବ । ସେ ମନ୍ତ୍ରୀମାନଙ୍କ ସାହାଯ୍ୟରେ ଏହି ଶାସନ ପରିଚାଳନା କରିବେ । ଗଭର୍ଣ୍ଣରମାନଙ୍କୁ ଅନେକ କ୍ଷମତା ଦିଆ ଯାଇଛି । ସେ ମୁଖ୍ୟମନ୍ତ୍ରୀଙ୍କୁ ନିଯୁକ୍ତ କରିବେ । ମୁଖ୍ୟମନ୍ତ୍ରୀଙ୍କ ପରାମର୍ଶରେ ଅନ୍ୟ ମନ୍ତ୍ରୀମାନଙ୍କୁ ନିଯୁକ୍ତ କରିବେ । ରାଜ୍ୟର ଆଡଭୋକେଟ୍ ଜେନେରାଲ ତାଙ୍କ ଦ୍ୱାରା ନିଯୁକ୍ତ ହେବେ । ରାଜ୍ୟର ଶାସନ ପାଇଁ ସେ ନିୟମ ଗଠନ

କରି ପାରିବେ । କେତେକ ମାମଲାରେ, ଦୋଷୀକୁ ଖଲାସ କରି-
ପାରିବେ କିମ୍ବା ଦୋଷୀର ଦଣ୍ଡ କମାଇ ଦେଇ ପାରିବେ ।
ବ୍ୟବସ୍ଥାପକ ସଭା ଉପରେ ମଧ୍ୟ ତାଙ୍କର ଅନେକ ଅଧିକାର ଅଛି ।
ବ୍ୟବସ୍ଥାପକ ସଭା ଡାକି ପାରିବେ, ବ୍ୟବସ୍ଥାପକ ସଭାରେ ବକ୍ତୃତା
ଦେଇ ପାରିବେ, ବ୍ୟବସ୍ଥାପକ ସଭା ଭାଙ୍ଗିଦେଇ ପାରିବେ ।
ବ୍ୟବସ୍ଥାପକ ସଭାରେ ଯେଉଁ ଆଇନ ପାସ୍ ହେବ, ତାହା ତାଙ୍କର
ଅନୁମତି ନ ପାଇଲେ କାର୍ଯ୍ୟକାରୀ ହୋଇପାରିବ ନାହିଁ । ଅର୍ଥ
ବିଲ୍ ତାଙ୍କର ଅନୁମତି ନ ପାଇଲେ ଆସେମ୍ବ୍ଲିରେ ପେଶ ହୋଇ
ପାରିବ ନାହିଁ ।

ଏହା ସତ୍ତ୍ୱେ ରାଜ୍ୟରେ ମନ୍ତ୍ରୀମାନଙ୍କ ମତ ଅନୁଯାୟୀ ଶାସନ
ଶୃଙ୍ଖଳା ବୋଲି ବୁଝାଯିବ । ମନ୍ତ୍ରୀମଣ୍ଡଳ ଗଭର୍ଣ୍ଣରଙ୍କ ଦ୍ୱାରା ନିଯୁକ୍ତ
ହୋଇଥିଲେ ମଧ୍ୟ ଗଭର୍ଣ୍ଣର ମନ୍ତ୍ରୀମଣ୍ଡଳଙ୍କ ବିନା ସାହାଯ୍ୟରେ
ଶାସନ କାର୍ଯ୍ୟ ଚଳାଇ ପାରିବେ ନାହିଁ । ମନ୍ତ୍ରୀମାନେ ଲୋକ
ପ୍ରତିନିଧି, ରାଜ୍ୟରେ ଯେତେବେଳେ ଲୋକପ୍ରତିନିଧି ଶାସନ ପ୍ରତିଷ୍ଠିତ
ସେତେବେଳେ ଲୋକ ପ୍ରତିନିଧି ଭାବରେ ଶାସନରେ ମନ୍ତ୍ରୀ-
ମଣ୍ଡଳର କର୍ତ୍ତୃତ୍ୱ ରହିବା ସ୍ୱାଭାବିକ । କେନ୍ଦ୍ରରେ ଯେପରି ରାଷ୍ଟ୍ରପତିଙ୍କ
ନାମରେ ଶାସନ ଚାଲେ ଓ ମନ୍ତ୍ରୀମଣ୍ଡଳ ପ୍ରକୃତରେ ସବୁ କରନ୍ତି,
ରାଜ୍ୟରେ ସେହିପରି ଗଭର୍ଣ୍ଣରଙ୍କ ନାମରେ ଶାସନ ଚାଲେ ଓ
ମନ୍ତ୍ରୀମଣ୍ଡଳ ଶାସନ ଚଳାନ୍ତି ।

ମନ୍ତ୍ରୀମାନେ ରାଜ୍ୟର ବ୍ୟବସ୍ଥାପକ ସଭାର ସଭ୍ୟ । କେନ୍ଦ୍ରରେ
ଯେପରି ପାର୍ଲିଆମେଣ୍ଟ ଆଇନ କରେ, ରାଜ୍ୟ ପାଇଁ ବ୍ୟବସ୍ଥାପକ
ସଭା ଆଇନ କରେ । ତେଣୁ ପ୍ରତ୍ୟେକ ରାଜ୍ୟରେ ବ୍ୟବସ୍ଥାପକ
ସଭା ଅଛି । ସମ୍ବିଧାନ ଅନୁସାରେ ବିହାର, ବମ୍ବେ, ମାନ୍ଦ୍ରାଜ,
ପଞ୍ଜାବ, ଉତ୍ତର ପ୍ରଦେଶ, ପଶ୍ଚିମ ବଙ୍ଗଳା ଓ ମହୀଶୂର [ଖ ଶ୍ରେଣୀ

ରାଜ୍ୟ]ରେ ଦୁଇଟି ସଭା—ଅନ୍ୟ ରାଜ୍ୟ ଗୁଡ଼ିକରେ ଗୋଟିଏ ଗୋଟିଏ ସଭା । ଯେଉଁଠି ଗୋଟିଏ ଗୋଟିଏ ସଭା ଅଛି, ସେଠି ତାକୁ ଏସେମ୍ବ୍ଲି ବୋଲି କହୁଛନ୍ତି । ଯେଉଁଠି ଦୁଇଟି ସଭା ଅଛି, ସେଠି ଦ୍ୱିତୀୟ ସଭାଟିକୁ କାଉନ୍‌ସିଲ୍ ବୋଲି କୁହାଯାଏ । ଏସେମ୍ବ୍ଲିର ସଭ୍ୟ ୫୦୦ରୁ ଅଧିକ ହୋଇ ପାରିବେ ନାହିଁ କି ୬୦ରୁ କମ ହୋଇ ପାରିବେ ନାହିଁ । ଏମାନେ ସମସ୍ତେ ପ୍ରତ୍ୟକ୍ଷ ଭାବରେ ସାବାଳକ ଭୋଟ ପ୍ରଥାରେ ନିର୍ବାଚିତ ହୋଇ ଆସିବେ । ପ୍ରତ୍ୟେକ ୭୫ ହଜାର ଲୋକପାଇଁ ଜଣେ ଏସେମ୍ବ୍ଲି ସଭ୍ୟ ନିର୍ବାଚିତ ହୋଇ ପାରିବେ । ଏସେମ୍ବ୍ଲିର ଆୟୁଷ ୫ବର୍ଷ ହେବ । ଚତୁର୍ଥ ପରିଚ୍ଛେଦରେ ଓଡ଼ିଶା ଏସେମ୍ବ୍ଲି ବିଷୟରେ ଆଲୋଚନା କରାଯାଇଛି । ସେଥିରୁ ଏସେମ୍ବ୍ଲିର କାର୍ଯ୍ୟ ସେଥିରୁ ଜଣାଯିବ । ଯେଉଁଠି କାଉନସିଲ୍ ଅଛି, ସେଠି କାଉନସିଲ୍‌ର ସଭ୍ୟ ଏସେମ୍ବ୍ଲିର ଏକ ଚତୁର୍ଥାଂଶରୁ ଅଧିକ ହେବେ ନାହିଁ । କିନ୍ତୁ ଅନ୍ତତଃ କମରେ ୪୦ରୁ କମ ହେବେ ନାହିଁ । ଏମାନଙ୍କ ମଧ୍ୟରୁ ୬ ଭାଗରୁ ୫ଭାଗ ସଭ୍ୟ ସ୍କୁଲବୋର୍ଡ଼, ମ୍ୟୁନିସିପାଲଟି, ଏସେମ୍ବ୍ଲି ପ୍ରଭୃତି ସଭା ମାନଙ୍କ ଦ୍ୱାରା ନିର୍ବାଚିତ ହୋଇ ଆସିବେ । ବାକିତକ ରାଜ୍ୟପାଳଙ୍କ ଦ୍ୱାରା ମନୋନୀତ ହେବେ । କାଉନସିଲ ଏକ ସ୍ଥାୟୀ ସଭା । ପ୍ରତି ଦୁଇ ବର୍ଷରେ ଥରେ ଏହାର ଏକ ତୃତୀୟାଂଶ ସଭ୍ୟ ଅବସର ନେବେ । କେନ୍ଦ୍ରରେ ଲୋକସଭାଠାରୁ ରାଜ୍ୟସଭାର ଉପରେ କ୍ଷମତା କମ, ସେହିପରି ରାଜ୍ୟରେ ଏସେମ୍ବ୍ଲିଠାରୁ କାଉନସିଲ୍‌ର କ୍ଷମତା କମ । ଏସେମ୍ବ୍ଲିର ସଭ୍ୟ ହେବାପାଇଁ ୨୫ ବର୍ଷ ଓ କାଉନସିଲ୍‌ର ସଭ୍ୟ ହେବା ପାଇଁ ୩୦ ବର୍ଷ ବୟସ ହେବା ଦରକାର । ପାର୍ଲିଆମେଣ୍ଟରେ ରାଜ୍ୟସଭା ଓ ଲୋକ ସଭାର ସଭ୍ୟ ହେବାକୁ ମଧ୍ୟ ଠିକ ସେହିପରି ବୟସ ଧାର୍ଯ୍ୟ କରାଯାଇଛି । ଭାରତର ନାଗରିକ ନ ହେଲେ ତ ରାଜ୍ୟ

ସଭା ଓ ଲୋକସଭା ବା ଆସେମ୍ବ୍ଲି ଓ କାଉନସିଲକୁ କେବଳ ସର୍ବ୍ୟ ହୁଏ ଠିଆ ହୋଇ ପାରିବେ ନାହିଁ । ଏହା ବ୍ୟତୀତ ସଭ୍ୟମାନଙ୍କ ଯୋଗ୍ୟତା ପାଇଁ ପାର୍ଲିଆମେଣ୍ଟ ନୂଆ ଆଇନ ମଧ୍ୟ କରିପାରନ୍ତି । ରାଜ୍ୟରେ ବ୍ୟବସ୍ଥାପକ ସଭା ଖାଲି ଯେ ଆଇନ କରେ ତା ନୁହେଁ, ପାର୍ଲିଅମେଣ୍ଟ ପରି ଶାସନକୁ ମଧ୍ୟ ନିୟନ୍ତ୍ରଣ କରେ । ବିଚାର ବିଭାଗ କଥା ତ ଆମେ ଆଗରୁ ଆଲୋଚନା କରିଛେ । ପ୍ରତ୍ୟେକ ରାଜ୍ୟରେ ଏକ ଏକ ହାଇକୋର୍ଟ ରହିବା କଥା । ଏମାନେ ବିଚାର ବିଭାଗର କାର୍ଯ୍ୟ ତୁଲାଇବେ ।

କ ଶ୍ରେଣୀ ପରି ଖ ଶ୍ରେଣୀ ରାଜ୍ୟ ଗୁଡ଼ିକରେ ମଧ୍ୟ ଶାସନ ଚଳିଛି । ଖ ଶ୍ରେଣୀ ରାଜ୍ୟ ଆମ ଦେଶରେ ୮ ଗୋଟି । କ ଶ୍ରେଣୀ ରାଜ୍ୟମାନଙ୍କଠାରୁ ଏମାନଙ୍କର କ୍ଷମତା କମ ନୁହେଁ । ପୂର୍ବରୁ ଯେଉଁ ଗୁଡ଼ିକ ଗଡ଼ଜାତ ଥିଲା ଓ ଯେଉଁ ଗୁଡ଼ିକ ମିଶି ଏବେ ଏକ ଏକ ନୂଆ ରାଜ୍ୟ ହୋଇଛନ୍ତି, ସେମାନଙ୍କୁ ଖ ଶ୍ରେଣୀ ରାଜ୍ୟ କୁହାଯାଉଛି । ହାଇଦ୍ରାବାଦ, ମହୀଶୂର, ଜାମୁ ଓ କାଶ୍ମୀର ପ୍ରଭୃତି ଅନେକ ବଡ଼ ବଡ଼ ରାଜ୍ୟ ଏଥିର ଅନ୍ତର୍ଭୁକ୍ତ । ଏ ସବୁ ରାଜ୍ୟର ମାଲିକଙ୍କୁ ରାଜ୍ୟପାଳ ବା ଗଭର୍ଣ୍ଣର ନକହି ରାଜପ୍ରମୁଖ ବୋଲି କୁହାଯାଉଛି [ କାଶ୍ମୀର ଛଡ଼ା ] । ଗଭର୍ଣ୍ଣରଙ୍କର ଯେପରି କ୍ଷମତା ଅଛି, ରାଜପ୍ରମୁଖଙ୍କର ସେହିପରି କ୍ଷମତା । ମୋଟା ମୋଟି ଭାବରେ ଦେଖିଲେ କ ଶ୍ରେଣୀ ରାଜ୍ୟ ଓ ଖ ଶ୍ରେଣୀ ରାଜ୍ୟ ଭିତରେ ବେଶୀ କିଛି ଫରକ ନାହିଁ । ଏହା ବ୍ୟତୀତ ଆମର ୯ଟି 'ଗ' ଶ୍ରେଣୀ ରାଜ୍ୟ ମଧ୍ୟ ଅଛି । ଅଜମିର, ଭୋପାଳ, କୁର୍ଗ ପ୍ରଭୃତି ଛୋଟ ଛୋଟ ରାଜ୍ୟ ଏହାର ଅନ୍ତର୍ଗତ । ଏହାର ଶାସନ କ ଓ ଖ ଶ୍ରେଣୀ ରାଜ୍ୟର ଶାସନଠାରୁ ଟିକିଏ ଅଲଗା । ଏହି ରାଜ୍ୟଗୁଡ଼ିକ ରାଷ୍ଟ୍ରପତିଙ୍କ ଦ୍ୱାରା ଶାସିତ ହେବ । ରାଷ୍ଟ୍ରପତି ଚିଫ୍ କମିଶନର ବା ଲେଫଟିନାଣ୍ଟ ଗଭର୍ଣ୍ଣର

ନିଯୁକ୍ତ କରି ଏହାର ଶାସନ ପରିଚାଳନା କରନ୍ତି । ତଥାପି ଏହି
ରାଜ୍ୟ ଗୁଡ଼ିକରେ ପ୍ରତିନିଧି ମୂଳକ ଶାସନ ପ୍ରତିଷ୍ଠା କରିବା ପାଇଁ
ପାର୍ଲିଆମେଣ୍ଟକୁ କ୍ଷମତା ଦିଆଯାଇଛି । ସେହି କ୍ଷମତା ବଳରେ
ପାର୍ଲିଆମେଣ୍ଟ ୬ଟି ରାଜ୍ୟରେ ନିର୍ବାଚିତ ଆସେମ୍ବ୍ଲି ଓ ମନ୍ତ୍ରୀମଣ୍ଡଳ
ପ୍ରତିଷ୍ଠା କରି ସାରିଛନ୍ତି । ଏହି ତିନୋଟି ପ୍ରକାର ରାଜ୍ୟ ବ୍ୟତୀତ
ଅଣ୍ଡାମାନ ଓ ନିକୋବର ଅଞ୍ଚଳ ମଧ୍ୟ ଭାରତର ଅନ୍ତର୍ଭୁକ୍ତ ।
ଏହା ମଧ୍ୟ ରାଷ୍ଟ୍ରପତିଙ୍କ ଦ୍ୱାରା ଶାସିତ ହେଉଅଛି ।

ଖ ଓ ଗ ଶ୍ରେଣୀ ରାଜ୍ୟମାନଙ୍କୁ ଦାୟିତ୍ୱପୂର୍ଣ୍ଣ ସରକାର ଦିଆ-
ଯାଇଛି । ସେମାନେ ନିଜର ଶାସନ ନିଜ ମନଇଚ୍ଛା ଚଳାଇବେ ।
ସେମାନଙ୍କୁ ଯେଉଁ କ୍ଷମତା ଦିଆଯାଇଛି, ସେଥିରେ କେନ୍ଦ୍ରସରକାର
ହସ୍ତକ୍ଷେପ କରିବେ ନାହିଁ । କିନ୍ତୁ ସମ୍ବିଧାନରେ ଯେ ସବୁ ବ୍ୟବସ୍ଥା
ଅଛି, ତାର ସବୁ ବିଚାର କଲେ ଦେଖାଯିବ ଯେ କେନ୍ଦ୍ରସରକାର
ରାଜ୍ୟ ସରକାରଙ୍କର ଶାସନରେ ଅନେକ ପ୍ରକାର ହସ୍ତକ୍ଷେପ
କରୁଛନ୍ତି । ପ୍ରଥମ ଗଭର୍ଣ୍ଣର ରାଷ୍ଟ୍ରପତିଙ୍କ ଦ୍ୱାରା ନିଯୁକ୍ତ ହେଉଛନ୍ତି ।
ଦ୍ୱିତୀୟତଃ ଆଇ. ଏ. ଏସ୍, ଆଇ. ପି. ଏସ୍, ପ୍ରଭୃତି କର୍ମଚାରୀ
ଭାରତ ସରକାରଙ୍କ ଦ୍ୱାରା ନିଯୁକ୍ତ ହେଉଛନ୍ତି । ସେମାନଙ୍କ ଉପରେ
ରାଜ୍ୟ ସରକାରଙ୍କର କର୍ତ୍ତୃତ୍ୱ ବେଶୀ ରହୁ ନାହିଁ—ଅଥଚ
ସେମାନଙ୍କ ଦ୍ୱାରା ରାଜ୍ୟର ଶାସନ ପରିଚାଳନା କରାଯାଉଛି ।
ତୃତୀୟତଃ କେନ୍ଦ୍ରସରକାର ରାଜ୍ୟସରକାରମାନଙ୍କୁ ସାହାଯ୍ୟ ଦେଇ
ସେମାନଙ୍କ ଶାସନରେ ମଧ୍ୟ ହସ୍ତକ୍ଷେପ କରୁଛନ୍ତି । ଯେ ଟଙ୍କା ଦିଏ,
ସେ ଇଚ୍ଛାନୁସାରେ କରେ । କିନ୍ତୁ ସବୁ ଅବସ୍ଥା ଦେଖିଲେ ତ କେନ୍ଦ୍ର-
ସରକାରଙ୍କର କର୍ତ୍ତୃତ୍ୱ ଅପରିମିତ । ଏହା ବ୍ୟତୀତ ଯୋଜନା କରି-
ବାରେ, ଶାସନ ପରିଚାଳନାରେ ଓ ଅନ୍ୟ ବହୁ ବିଷୟରେ କେନ୍ଦ୍ରସରକାର
ସବୁ ରାଜ୍ୟସରକାରଙ୍କ ଉପରେ ପ୍ରାଧାନ୍ୟ ଅଛି । ପ୍ରଥମେ ଆଇନ

କରିବା କଥା ଦେଖାଯାଇ । କେନ୍ଦ୍ରସରକାରଙ୍କୁ ଯେଉଁ କ୍ଷମତା ଦିଆଯାଇଛି, ସେ ବିଷୟରେ ପାର୍ଲିଆମେଣ୍ଟ ଆଇନ କରିବେ; ରାଜ୍ୟ ସରକାରଙ୍କୁ ଯେଉଁ କ୍ଷମତା ଦିଆଯାଇଛି, ସେ ବିଷୟରେ ଆସେମ୍ବ୍ଲି ଆଇନ କରିବେ; ବାକି କେତେକ ବିଷୟରେ ଉଭୟେ ଆଇନ କରି ପାରିବେ । କିନ୍ତୁ ଯେଉଁଥିରେ ଉଭୟେ ଆଇନ କରି ପାରିବେ, ସେଥିରେ ପାର୍ଲିଆମେଣ୍ଟଙ୍କୁ ଅଧିକ କ୍ଷମତା ଦିଆଯାଇଛି । ପାର୍ଲିଆମେଣ୍ଟ ଆଇନ ଅପେକ୍ଷା ଆସେମ୍ବ୍ଲି ଆଇନ ଶକ୍ତି ବଡ଼ ହୋଇ ପାରିବ ନାହିଁ । ଏହା ବ୍ୟତୀତ ଯାହା ଏବେ କିଛି ନୂଆ ବିଷୟ ଆବଶ୍ୟକତା ଆସେ, ତାହେଲେ ସେ ବିଷୟରେ ପାର୍ଲିଆମେଣ୍ଟ ଆଇନ କରି ପାରିବେ । କେବଳ ଏତିକି ନୁହେଁ । ଆସେମ୍ବ୍ଲିକୁ ଆଇନ କରିବାକୁ ଯେଉଁ କ୍ଷମତା ଦିଆଯାଇଛି, ସେ ବିଷୟରେ ମଧ୍ୟ ଦରକାର ପଡ଼ିଲେ ପାର୍ଲିଆମେଣ୍ଟ ଆଇନ କରି ପାରିବେ । ରାଜ୍ୟ ସଭାରେ ଯଦି ଗୋଟିଏ ପ୍ରସ୍ତାବ ପାସ୍ ହୁଏ ଯେ ଦେଶହିତ ପାଇଁ ପାର୍ଲିଆମେଣ୍ଟ ଆସେମ୍ବ୍ଲି ପାଇଁ ଆଇନ କରିବା ଉଚିତ, ତା ହେଲେ ପାର୍ଲିଆମେଣ୍ଟ ରାଜ୍ୟପାଇଁ ଆଇନ କରିପାରିବେ । ଏଥିରେ ଅବଶ୍ୟ କେତେକ କଟକଣା ଅଛି । ତଥାପି ଦରକାର ହେଲେ ଏହି କ୍ଷମତା ପ୍ରୟୋଗ ସମ୍ଭବ ହୋଇ ପାରେ । ଜରୁରୀ ଅବସ୍ଥା ଘୋଷଣା ହେଲେ ତ ପାର୍ଲିଆମେଣ୍ଟ ରାଜ୍ୟପାଇଁ ଆଇନ କରିବେ । ପୁଣି ରାଜ୍ୟ ଆସେମ୍ବ୍ଲିରେ ପାସ୍ ହୋଇଥିବା ଆଇନ ଯଦି ପାର୍ଲିଆମେଣ୍ଟ ଆଇନ ବିରୁଦ୍ଧରେ ଯାଏ, ତା ହେଲେ ସେ ଆଇନ କାର୍ଯ୍ୟକାରୀ ହୋଇ ପାରିବ ନାହିଁ । ଦୁଇ ବା ତତୋଧିକ ରାଜ୍ୟ ମିଶି ପାର୍ଲିଆମେଣ୍ଟଙ୍କୁ ତାଙ୍କ ପାଇଁ ଆଇନ କରିବାକୁ ଯଦି ଅନୁରୋଧ କରନ୍ତି, ତା ହେଲେ ପାର୍ଲିଆମେଣ୍ଟ ସେମାନଙ୍କ ପାଇଁ ଆଇନ କରି ପାରିବେ । କୌଣସି ଏକ ସନ୍ଧି ବା ଚୁକ୍ତିକୁ କାର୍ଯ୍ୟକାରୀ କରିବାପାଇଁ ଦରକାର ପଡ଼ିଲେ ପାର୍ଲିଆମେଣ୍ଟ

ମଧ୍ୟ ସମୁଦାୟ ଦେଶପାଇଁ ଆଇନ କରି ପାରିବେ । ଏ ହେଲା ଆଇନ
ଅଧିକାର । ବର୍ତ୍ତମାନ ଶାସନ ସମ୍ପର୍କ ଦେଖାଯାଉ । ରାଜ୍ୟର ଶାସନ
ଏପରି ଭାବରେ ଚଳିବ ଯେ ପାର୍ଲିଆମେଣ୍ଟର ଆଇନରେ ଉଲ୍ଲଂଘନ
ଆସିବ ନାହିଁ । ଏଥିପାଇଁ କେନ୍ଦ୍ରସରକାର ମଧ୍ୟ ରାଜ୍ୟସରକାରଙ୍କୁ
ନିର୍ଦ୍ଦେଶ ଦେଇ ପାରିବେ । ରାଜ୍ୟ ସରକାର କେନ୍ଦ୍ରସରକାରଙ୍କ
ଶାସନରେ ବାଧା ସୃଷ୍ଟି କରିପାରିବେ ନାହିଁ । ରାସ୍ତାଘାଟ ନିର୍ମାଣ
ଓ ସୁରକ୍ଷା ପାଇଁ କେନ୍ଦ୍ରସରକାର ରାଜ୍ୟସରକାରଙ୍କୁ ମଧ୍ୟ ନିର୍ଦ୍ଦେଶ
ଦେଇ ପାରିବେ । ରାଜ୍ୟ ଭିତରେ ରେଳବାଇର ସୁରକ୍ଷା ପାଇଁ
କେନ୍ଦ୍ରସରକାର ମଧ୍ୟ ରାଜ୍ୟ ସରକାରଙ୍କୁ ନିର୍ଦ୍ଦେଶ ଦେଇ ପାରିବେ ।
ରାଜ୍ୟ ଓ ରାଜ୍ୟ ଭିତରେ କୌଣସି ବିବାଦ ସୃଷ୍ଟି ହେଲେ ରାଷ୍ଟ୍ରପତି
ମଧ୍ୟ ଏକ ସ୍ୱତନ୍ତ୍ର କାଉନସିଲ୍ ( Inter-State Council )
ବସାଇ ପାରିବେ । ଏହି କାଉନସିଲ୍ ବିବାଦର କାରଣ
ଅନୁସନ୍ଧାନ କରି, ତାର ସମାଧାନ ପାଇଁ ସୁପାରିଶ୍ କରିବେ । ଭିନ୍ନ
ଭିନ୍ନ ରାଜ୍ୟ ଓ କେନ୍ଦ୍ରସରକାର ଭିତରେ ସହଯୋଗ ଆଣିବା ପାଇଁ,
ଏହି କାଉନସିଲ୍ ମଧ୍ୟ ପରାମର୍ଶ ଦେଇପାରିବେ । ଏପରି ଅନେକ
କ୍ଷେତ୍ରରେ କେନ୍ଦ୍ର ସରକାର ରାଜ୍ୟ ସରକାରଙ୍କ ଶାସନରେ ହସ୍ତ-
କ୍ଷେପ କରୁଛନ୍ତି । ଅର୍ଥ ବ୍ୟୟ ସମ୍ପର୍କରେ ମଧ୍ୟ କେନ୍ଦ୍ର ଓ ରାଜ୍ୟ
ସରକାରଙ୍କ ଭିତରେ ଅନେକ ସହଯୋଗ ଅଛି । କେନ୍ଦ୍ର ଓ ରାଜ୍ୟ
ସରକାରଙ୍କ ଭିତରେ ଅର୍ଥ ବ୍ୟୟର ଯେଉଁ ବଣ୍ଟନ କରାଯାଇଛି ,
ସେଥିରେ କେତେକ ବିଭାଗ ପୁରାପୁରି ଭାବରେ କେନ୍ଦ୍ର ସରକାରଙ୍କୁ
ଦିଆଯାଇଛି, ଆଉ କେତେକ ବିଭାଗ ରାଜ୍ୟସରକାରଙ୍କୁ ଦିଆଯାଇଛି ।
ଅନ୍ୟ କେତେକ କ୍ଷେତ୍ରରେ କେତେକ ଶୁଳ୍କ କର କେନ୍ଦ୍ରସରକାର
ନିର୍ଦ୍ଧାରଣ କରିବେ ଓ ରାଜ୍ୟ ସରକାର ଆଦାୟ କରିବେ ।
ଯଥା କେତେକ ଶୁଳ୍କ କର କେନ୍ଦ୍ରସରକାର ନିର୍ଦ୍ଧାରଣ ଓ

ଅଦାୟ କରିବେ କିନ୍ତୁ ତାର ଲବ୍ଧ ଧନ ରାଜ୍ୟ ସରକାରଙ୍କ ହାତକୁ ଆସିବ । କେତେ ବିଷୟ କେନ୍ଦ୍ର ସରକାରଙ୍କ ହାତରେ ନ୍ୟସ୍ତ ହେବ । ଏହା ବ୍ୟତୀତ କେତେକ କ୍ଷେତ୍ରରେ କେନ୍ଦ୍ର-ସରକାର ରାଜ୍ୟସରକାରଙ୍କୁ ମଧ୍ୟ ସାହାଯ୍ୟ ଦେବେ । ଏ ତତ୍ତ୍ୱରୁ ଦେଖାଯିବ ଯେ ଆମ ଦେଶରେ ଯେତେହେଲେ ସରକାର ପ୍ରତିଷ୍ଠିତ ହୋଇ କେନ୍ଦ୍ର ଓ ରାଜ୍ୟସରକାରମାନଙ୍କ ମଧ୍ୟରେ କ୍ଷମତା ବଣ୍ଟନ ହୋଇଥିଲେ ମଧ୍ୟ, କେନ୍ଦ୍ରସରକାରଙ୍କୁ ଅଧିକ କ୍ଷମତା ଦିଆଯାଉଛି ଓ ରାଜ୍ୟ ସରକାରଙ୍କ କ୍ଷମତାରେ କେନ୍ଦ୍ରସରକାର ହସ୍ତକ୍ଷେପ କରିବାର ସୁବିଧା ପାଉଛନ୍ତି ।

—ଏଥିରେ ଅନେକ ଶଙ୍କିତ । ଭବିଷ୍ୟତରେ ରାଜ୍ୟ ସରକାର କେନ୍ଦ୍ର ସରକାରଙ୍କର ତାଳକଣା ହୋଇଯିବେ ବୋଲି ଭୟ ମଧ୍ୟ ପ୍ରକାଶ ପାଉଛି । କିନ୍ତୁ ସାଧାରଣ ସମୟରେ କେନ୍ଦ୍ରସରକାର ରାଜ୍ୟ ସରକାରଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବେ ନାହିଁ ବୋଲି ବିଶ୍ୱାସ କରାଯାଏ । ସେ ଯାହା ହେଉ ଏ କଥା ମାନିବାକୁ ହେବ ଯେ ଆମ ଦେଶର ଏକତା ଓ ସଂହତି ରକ୍ଷା କରିବା ପାଇଁ ଏକ ଦୃଢ଼ କେନ୍ଦ୍ରସରକାର ଏକାନ୍ତ ଦରକାର । ତା ନ ହେଲେ ପ୍ରାଦେଶିକତା ଓ ସଙ୍କୀର୍ଣ୍ଣତା ମନୋବୃତ୍ତିଙ୍କ ଦେଶକୁ ଦୁର୍ବଳ କରି ପକାଇବ । ଗତ ସୁଦୀର୍ଘ ଯୁଗରୁ ଆମ ଦେଶରେ ଯେଉଁ ରାଜନୀତିକ ଚିନ୍ତାଧାରା ଥିଲା, ତାହା ବର୍ତ୍ତମାନ ବଦଳି ଯାଇଛି । ଯେତେବେଳେ ହିନ୍ଦୁ ମୁସଲମାନ ସମସ୍ୟା ଭାରତର ରାଜନୀତିରେ ଏକ ବଡ଼ ପ୍ରଶ୍ନ ହୋଇ ଉଠିଥିଲା । ମୁସଲମାନ୍ ଲିଗ୍‌କୁ ସନ୍ତୁଷ୍ଟ କରିବା ପାଇଁ ପ୍ରଦେଶକୁ ଅଧିକ କ୍ଷମତା ଦେବା ସକାଶେ ରାଜନୀତିଜ୍ଞମାନେ ମତ ପ୍ରକାଶ କରୁଥିଲେ । ଆଜି ସେ ପ୍ରଶ୍ନ ନାହିଁ । ତେଣୁ ସ୍ପଷ୍ଟ ମଧ୍ୟ ଆମକୁ ଏକ ଦୃଢ଼ ଓ ଶକ୍ତିଶାଳୀ କେନ୍ଦ୍ର ସରକାର ପ୍ରତିଷ୍ଠା କରିବା ପାଇଁ ସ୍ପୃହା

ଦେଉଛନ୍ତି । ଆଜିକାଲିକାର ଅନ୍ତର୍ଜାତିକ କ୍ଷେତ୍ରରେ ଛୋଟ ଛୋଟ ରାଜ୍ୟମାନଙ୍କର ସ୍ଥାନ ନାହିଁ । ଭାରତବର୍ଷରେ ଆମର ଅର୍ଥନୈତିକ ସ୍ୱାଧୀନତାପାଇଁ ଏକ ଦୃଢ଼ କେନ୍ଦ୍ରସରକାର ଦରକାର । ତା ନ ହେଲେ ଅର୍ଥନୈତିକ ଯୋଜନା କାର୍ଯ୍ୟକାରୀ ହୋଇ ପାରିବ ନାହିଁ । ଏହି ଅଙ୍ଗ ରାଜ୍ୟମାନଙ୍କର ସହଯୋଗ ନ ପାଇଲେ, କେନ୍ଦ୍ରସରକାର ଯେଉଁ ଯୋଜନା କରିବେ, ତାହା କାଗଜ କଲମରେ ରହିବ । ତେଣୁ ବିଭିନ୍ନ ରାଜ୍ୟର ସହଯୋଗରେ ଦେଶର ଅର୍ଥନୈତିକ ବିକାଶ ଆଣିବା ପାଇଁ କେନ୍ଦ୍ର ସରକାରଙ୍କୁ ଯଥେଷ୍ଟ କ୍ଷମତା ମିଳିବା ଯୁକ୍ତ । ତେବେ ଏଥିପାଇଁ ରାଜ୍ୟ ସରକାର ମାନଙ୍କୁ କେନ୍ଦ୍ର-ସରକାରଙ୍କର କ୍ରୀଡ଼ା ପିତୁଳା କରିବା ଉଚିତ ନୁହେଁ । ଏମାନଙ୍କର ସହଯୋଗରେ ଦେଶର 'ଶାସନ ଚକ୍ରଗୁଳାଙ୍କ' ହେବା ଉଚିତ । ତା ନ ହେଲେ ରାଜ୍ୟ ଓ କେନ୍ଦ୍ରସରକାରଙ୍କ ଭିତରେ ବିବାଦ ସୃଷ୍ଟି ହେବ—ରାଜ୍ୟମାନେ ବାଧ୍ୟ ହୋଇ କେନ୍ଦ୍ରସରକାରଙ୍କ କଥା ମାନିବେ କିନ୍ତୁ କାର୍ଯ୍ୟରେ ଆନ୍ତରିକତା ଦେଖାଇବେ ନାହିଁ । ପୁଣି କେନ୍ଦ୍ରସରକାରଙ୍କର ଆଧିପତ୍ୟ ଓ ହସ୍ତକ୍ଷେପ ଫଳରେ ଯଦି ରାଜ୍ୟରେ ଲୋକତନ୍ତ୍ରମୂଳକ ଶାସନର ଅବସାନ ଘଟେ, ତା ହେଲେ ସମ୍ବିଧାନରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠା ହେବ ବୋଲି ଯେଉଁ ଉଦ୍ଦେଶ୍ୟ ରହିଛି, ତାହା କାର୍ଯ୍ୟକାରୀ ହୋଇ ପାରିବ ନାହିଁ । ସମ୍ବିଧାନର ମହତ୍ତ୍ୱ ଦୃଷ୍ଟିରୁ କେନ୍ଦ୍ରସରକାର ରାଜ୍ୟସରକାର ମାନଙ୍କ ଅଧିକାର ଉପରେ ଅକାରଣରେ ହସ୍ତକ୍ଷେପ କରିବା ଉଚିତ ନୁହେଁ ।

# ଓଡ଼ିଶା ଆସେମ୍ବ୍ଲି

୧୯୩୬ ମସିହାରୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶରୂପେ ଗଠିତ ହୋଇଅଛି । ସେହି ଦିନଠାରୁ ଏହାର ଏକ ସ୍ୱତନ୍ତ୍ର ଆସେମ୍ବ୍ଲି ଅଛି । କିନ୍ତୁ ସେତେବେଳର ଆସେମ୍ବ୍ଲି ୧୯୩୫ ଶାସନସଂହିତା ଅନୁଯାୟୀ ଗଠନ କରାଯାଇଥିଲା । ଆସେମ୍ବ୍ଲି ଉପରେ ପ୍ରାଦେଶିକ ଗଭର୍ଣ୍ଣରଙ୍କର ବିଶେଷ କ୍ଷମତା ଥିଲା । ମନ୍ତ୍ରିମଣ୍ଡଳ ଉପରେ ଗଭର୍ଣ୍ଣର ଅଯଥା କର୍ତ୍ତୃତ୍ୱ ବିସ୍ତାର କରୁଥିଲେ । କେନ୍ଦ୍ର ସରକାର ମଧ୍ୟ ପ୍ରାଦେଶିକ ସରକାରଙ୍କ ଉପରେ କ୍ଷମତା ଜାହିର କରୁଥିଲେ । ମୋଟ ଉପରେ ଆସେମ୍ବ୍ଲିର ସ୍ୱାଧୀନ କାର୍ଯ୍ୟ ଅଧିକାର ନ ଥିଲା । ସେତେବେଳକୁ ମଧ୍ୟ ଓଡ଼ିଶାର ଗଡ଼ଜାତ ଓଡ଼ିଶାରେ ମିଶି ନ ଥିଲା । ତେଣୁ ଆସେମ୍ବ୍ଲିରେ ମୋଟ ୬୦ ଜଣ ସଭ୍ୟ ଥିଲେ । ସେମାନେ ସମସ୍ତେ ୧୯୩୫ ଶାସନସଂହିତା ଅନୁଯାୟୀ ନିର୍ବାଚିତ ହୋଇଥିଲେ । ସେତେବେଳେ ଓଡ଼ିଶାର ପ୍ରତ୍ୟେକ ନାଗରିକଙ୍କର ଭୋଟ ଦେବାର ଅଧିକାର ନ ଥିଲା । ସମ୍ପତ୍ତିଥିବା ଲୋକ ଭୋଟ ଦେଇ ସେମାନଙ୍କୁ ନିର୍ବାଚିତ କରୁଥିଲେ । ଜମିଦାର, ଶିକ୍ଷିତ; ମୁସଲମାନ ଓ ଖ୍ରୀଷ୍ଟିଆନ ପ୍ରଭୃତି ଶ୍ରେଣୀର ଲୋକମାନଙ୍କ ପାଇଁ ସ୍ଥାନ ସଂରକ୍ଷିତ ମଧ୍ୟ କରାଯାଇଥିଲା । ୧୯୪୬ ମସିହାରେ ଆଉ ଥରେ ନିର୍ବାଚନ ହେଲା । କିନ୍ତୁ ସେହି ୧୯୩୫ ମସିହା ଶାସନସଂହିତା ଅନୁଯାୟୀ ଅବଶ୍ୟ ୧୯୪୭ ମସିହାରେ ଭାରତର ରାଜନୈତିକ ଅବସ୍ଥାର ପରିବର୍ତ୍ତନ ହେବା ଯୋଗୁଁ ମନ୍ତ୍ରିମଣ୍ଡଳ ଓ ଗଭର୍ଣ୍ଣର, କେନ୍ଦ୍ର ସରକାର ଓ ପ୍ରାଦେଶିକ ସରକାରଙ୍କ ଭିତରେ ଅନ୍ତରଙ୍ଗ ସହଯୋଗ ସ୍ଥାପିତ ହେଲା । କିନ୍ତୁ ସମ୍ବିଧାନର କିଛି ପରିବର୍ତ୍ତନ ହୋଇ ନ ଥିଲା ।

ପ୍ରଦେଶ ଓ କେନ୍ଦ୍ରରେ ଏକ ଦଳର ଶାସନ ଚାଲୁଥିବାରୁ ସଙ୍ଘର୍ଷର
ଅବକାଶ ହୋଇନାହିଁ । ଏବେ ଯେଉଁ ନୂଆ ଆସେମ୍ବ୍ଲି ଗଢ଼ାଯାଉଛି
ତାହା ପୂର୍ବ ଆସେମ୍ବ୍ଲି ଗୁଡ଼ିକଠାରୁ ସମ୍ପୂର୍ଣ୍ଣ ପୃଥକ । ଗଡ଼ଜାତ
ଗୁଡ଼ିକ ଓଡ଼ିଶା ପ୍ରଦେଶରେ ମିଶି ଯିବା ଫଳରେ ଆସେମ୍ବ୍ଲିର
ସଭ୍ୟ ସଂଖ୍ୟା ମଧ୍ୟ ବଢ଼ିଛି । ବର୍ତ୍ତମାନ ସଭ୍ୟ ସଂଖ୍ୟା ୧୪୦ ।
ଏମାନେ ସମସ୍ତେ ସାବାଳକ ଭୋଟ ଅନୁଯାୟୀ ନିର୍ବାଚିତ ହୋଇଛନ୍ତି ।
ଏମାନଙ୍କର ଅଧିକାର ବେଶୀ । ଏମାନେ ଓଡ଼ିଶା ଜନସାଧାରଣ-
ଙ୍କର ପ୍ରକୃତ ପ୍ରତିନିଧି । ୧୯୫୦ ସମ୍ବିଧାନ ଅନୁଯାୟୀ କେବଳ
ଆଦିବାସୀ ଓ ହରିଜନମାନଙ୍କପାଇଁ ସ୍ଥାନ ସଂରକ୍ଷଣ କରାଯାଇଛି ।
ତେଣୁ ଏମାନଙ୍କ ଛଡ଼ା ଅନ୍ୟ ସମସ୍ତେ ସାଧାରଣ ନିର୍ବାଚନମଣ୍ଡଳୀରୁ
ନିର୍ବାଚିତ ହୋଇ ଆସିଛନ୍ତି । ଆଦିବାସୀ ଓ ହରିଜନଙ୍କ ପାଇଁ ୪୯ଟି
ସ୍ଥାନ ସଂରକ୍ଷଣ କରାଯାଇଛି ।

## ଆଇନ କରିବା ଅଧିକାର

ଆସେମ୍ବ୍ଲିର କାର୍ଯ୍ୟ ଆଇନ କରିବା । ଶାସନର ତିନୋଟି
ବିଭାଗ । ଆସେମ୍ବ୍ଲି ଆଇନ କରେ, ଶାସନ ବିଭାଗ ଏହି ଆଇନକୁ
କାର୍ଯ୍ୟରେ ପରିଣତ କରେ ଓ ବିଚାର ବିଭାଗ ଆଇନରେ ଦୋଷ
ତ୍ରୁଟି ଥିଲେ ସେ କଥା ଦେଖାଇ ଦିଏ । ଏ ସମସ୍ତଙ୍କୁ କେଉଁ
ଶାସନ କାର୍ଯ୍ୟ ବୋଲେ । ତେଣୁ ସମ୍ବିଧାନ ଅନୁସାରେ ପ୍ରାଦେଶିକ
ଆସେମ୍ବ୍ଲିମାନଙ୍କୁ ଯେଉଁସବୁ ଅଧିକାର ଦିଆ ଯାଇଛି ସେ ସବୁ
ବିଷୟରେ ପ୍ରାଦେଶିକ ଆସେମ୍ବ୍ଲିମାନେ ଆଇନ କରିପାରିବେ ।
ଉଦାହରଣ ସ୍ୱରୂପ ଆମ ପ୍ରାଦେଶିକ ଆସେମ୍ବ୍ଲି କୃଷି, ଶିଳ୍ପ, ଜେଲ,
ପୁଲିସ, ଜଳସେଚନ, ଶିକ୍ଷା, ସ୍ୱାସ୍ଥ୍ୟ ପ୍ରଭୃତି ବିଷୟରେ ଯେକୌଣସି
ଆଇନ କରି ପାରିବେ । କାରଣ ଏସବୁ ବିଭାଗଗୁଡ଼ିକ ଉପରେ

ପ୍ରାଦେଶିକ ସରକାରମାନଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱ ଅଛି । କିନ୍ତୁ କୌଣସି ଗୋଟିଏ ଆଇନ କରିବାକୁ ହେଲେ, ଆସେମ୍ବ୍ଲି ବସିଥିବା ବେଳେ ଆସେମ୍ବ୍ଲିରେ ଉପସ୍ଥିତ ଥିବା ଅଧାରୁ ଅଧିକ ସଭ୍ୟଙ୍କର ସମ୍ମତି ମିଳିବା ଦରକାର । ତାହା ନ ହେଲେ କୌଣସି ଆଇନ ପାସ୍ ହୋଇ ପାରିବ ନାହିଁ । ଧର ଓଡ଼ିଶା ଆସେମ୍ବ୍ଲିରେ ଉଚ୍ଚ ଶିକ୍ଷା ଉଠାଇ ଦେବା ପାଇଁ ପ୍ରସ୍ତାବ ଆସିଲା । ୧୬୦ ଜଣ ସଭ୍ୟରୁ ୧୦୦ ଜଣ ସଭ୍ୟଙ୍କ ଉପସ୍ଥିତିରେ ଏହି ପ୍ରସ୍ତାବଟିର ଆଲୋଚନା ହେଲା । ସେଥିରୁ ଯଦି ୫୧ ଜଣ ଏହି ପ୍ରସ୍ତାବଟିକୁ ସମର୍ଥନ କଲେ, ତାହା ହେଲେ ପ୍ରସ୍ତାବଟି ଗ୍ରାହ୍ୟ ହୋଇଯିବ । ଅବଶ୍ୟ ସେତେବେଳେ ଏହାକୁ ଆଇନ ହୋଇଁ ପାରିବ ନାହିଁ । ଗଣତନ୍ତ୍ର ଶାସନ ବଡ଼ ସମୟସାପେକ୍ଷ । ଆସେମ୍ବ୍ଲିରେ ପ୍ରଥମେ ପ୍ରସ୍ତାବଟି ଆଗତ ହେବ । ଆସେମ୍ବ୍ଲିର ସଭ୍ୟମାନେ ତାକୁ ଅନୁମୋଦନ ଦେବେ । ତା'ପରେ ତାର ଟିକିନିଖି ଆଲୋଚନା ହେବ । ଯେ ଯାହା କହିବାର, ସେ ତାହା କହିବ । ଆଲୋଚନା ଓ ସମାଲୋଚନାରେ ମାସ ମାସ ବିତି ଯାଇପାରେ । ବିଶେଷ ମତଭେଦ ହେଲେ ତୁରନ୍ତ ଗୋଟିଏ କମିଟି ବସାଇ ଏ ବିଷୟରେ ଗୋଟିଏ ରିପୋର୍ଟ ଦେବାକୁ କୁହାଯାଇପାରେ । କମିଟି ରିପୋର୍ଟ ଆସିଲେ ପୁଣି ତୁରନ୍ତ ଆଲୋଚନା ଚାଲିବ, ଶେଷରେ ଭୋଟ ହେବ । ଭୋଟ ହେଲେ ଯେ ଅଧାରୁ ଅଧିକ ଲୋକ ଭୋଟ ଦେବେ, ତାହାହେଲେ ଯାଇଁ ପ୍ରସ୍ତାବଟି ଗ୍ରହଣ କରାଗଲା ବୋଲି ଧରାଯିବ । ସେତେବେଳେ ବି ଆଇନ ହେବ ନାହିଁ । ତାହାପରେ ପ୍ରଦେଶର ଗଭର୍ଣ୍ଣରଙ୍କ ପାଖକୁ ପ୍ରସ୍ତାବଟି ଯିବ । ସେ ଯଦି ଗ୍ରହଣ କରନ୍ତି, ତାହାହେଲେ ଯାଇଁ ଆଇନ ହେବ । ଅବଶ୍ୟ ନୂତନ ସମ୍ବିଧାନ ଅନୁସାରେ ଆସେମ୍ବ୍ଲିର ପ୍ରସ୍ତାବ ଗଭର୍ଣ୍ଣର ଗ୍ରହଣ କରିନେବେ ବୋଲି ଆଶା କରାଯାଉଛି । କିନ୍ତୁ ଗ୍ରହଣ ନ କରିବା ଅଧିକାର ବି

ଯୋଜନାର ଅନ୍ତ । କେବଳ ବିଷୟରେ ଯେ ହୁଏତ ରାଷ୍ଟ୍ରପତିଙ୍କ ସମର୍ପଣ କରିବ ପାରନ୍ତି । ଜମିଦାରୀ ଉଚ୍ଛେଦ ବିଲ୍‌ ଯେପରି ରାଷ୍ଟ୍ରପତିଙ୍କ ମଞ୍ଜୁରୀ ପାଇଁ ଗଲା । ତେବେ ମୋଟ ଉପରେ ଆସେମ୍ବ୍ଲିର ଯାହା କରିବାର କଥା । ଯାହା କରି ଯେପରି ଖର୍ଚ୍ଚର ବ୍ୟବସ୍ଥା କରିବେ, ଯାହା କରି ଯେପରି ଅଧିକ ବ୍ୟବସ୍ଥା କରିବା ମଧ୍ୟ ଆସେମ୍ବ୍ଲିର ଦାୟିତ୍ୱ । କାରଣ ନୂତନ ସମ୍ବିଧାନ ଅନୁସାରେ ଯେପରି କେତୋଟି ବିଭାଗ ପ୍ରାଦେଶିକ ସରକାରଙ୍କ ହାତକୁ ପରିଚାଳନା କରିବାପାଇଁ ଦିଆ ଯାଇଛି, ସେହିପରି କେତେକ ଅନ୍ୟ ମଧ୍ୟ ପ୍ରାଦେଶିକ ସରକାରଙ୍କ ହାତକୁ ଦିଆଯାଇଛି । ଏହା ଅନୁସାରେ ପ୍ରାଦେଶିକ ବିଭାଗଗୁଡ଼ିକ ପ୍ରାଦେଶିକ ସରକାର ପରିଚାଳନା କରିବେ । ଉଦାହରଣସ୍ୱରୂପ ଶିକ୍ଷା, କୃଷି ଅସୁକର, ବାଣିଜ୍ୟ, ଜଳସେଚନ କର, ଅବକାରୀ କର, ଜଙ୍ଗଲ କର ଇତ୍ୟାଦି ପ୍ରାଦେଶିକ ସରକାରଙ୍କ କ୍ଷମତାର ଅନ୍ତର୍ଗତ । କୌଣସି କର ବଢ଼ାଇବାକୁ କିମ୍ବା ତା କମାଇବାକୁ ଇଚ୍ଛା କଲେ, ପ୍ରାଦେଶିକ ସରକାର ମନଇଚ୍ଛା କରି ପାରନ୍ତେ ନାହିଁ । ଏଥିପାଇଁ ଆସେମ୍ବ୍ଲିର ଅନୁମତି ଦରକାର । ପ୍ରତ୍ୟେକ ବର୍ଷର ଖର୍ଚ୍ଚ ଓ ଆୟର ହିସାବ ଆସେମ୍ବ୍ଲି ଆଗରେ ଓ ଆସେମ୍ବ୍ଲିର ମଞ୍ଜୁରୀ ନେଲେ ଯାଇ ଖର୍ଚ୍ଚ ହୋଇପାରିବ । ଆସେମ୍ବ୍ଲି କୌଣସି ଖର୍ଚ୍ଚ ବିରୁଦ୍ଧରେ ମତ ଦେଲେ, ସେ ଖର୍ଚ୍ଚ ହୋଇ ପାରିବ ନାହିଁ । ଏପରିକି ମନ୍ତ୍ରୀମାନଙ୍କୁ ଏଥିପାଇଁ ଇସ୍ତଫା ଦେବାକୁ ପଡ଼ିପାରେ । ଉଦାହରଣ ସ୍ୱରୂପ ସରକାର ଯଦି କିଛି ବିଭାଗ ପରିଚାଳନା ପାଇଁ କୋଟିଏ ଟଙ୍କା ଖର୍ଚ୍ଚର ଅନୁମତି ମାଗନ୍ତି ଓ ଆସେମ୍ବ୍ଲି [illegible] [illegible] ଯଥାସମ୍ଭବ ପରିଚାଳନା [illegible] ନାହିଁ । [illegible] ବନ୍ଦ ଅଧିକାଂଶ ସଭ୍ୟଙ୍କରେ ଏ ପ୍ରସ୍ତାବକୁ ନାକଚ [illegible] ଯାହା-

ଅନୁମୋଦ କରିବେ । ଅନ୍ୟାନ୍ୟ ମନ୍ତ୍ରୀମାନଙ୍କୁ ମୁଖ୍ୟମନ୍ତ୍ରୀ ଦାଙ୍କରେ, ଗଭର୍ଣ୍ଣର ନିଯୁକ୍ତ କରିବେ ମାତ୍ର । ମନ୍ତ୍ରିମଣ୍ଡଳ ଆସେମ୍ବ୍ଲି ନିକଟରେ ଦାୟୀ । ଆସେମ୍ବ୍ଲିର ସମ୍ମତି ନ ପାଇଲେ ଏମାନେ ମନ୍ତ୍ରୀ ହୋଇ ରହି ପାରିବେ ନାହିଁ । ଅର୍ଥାତ୍ ଏମାନେ ଯାହା କରିବେ, ସେଥିରୁ ଆସେମ୍ବ୍ଲି ମଞ୍ଜୁର ନ କଲେ ମନ୍ତ୍ରିମଣ୍ଡଳ ଭାଙ୍ଗିଯିବ । ସର୍କାରୀ ଦଳ ସଂଖ୍ୟା ଗରିଷ୍ଠ ଦଳ ହୋଇଥିଲେ ମଧ୍ୟ ମନ୍ତ୍ରିମଣ୍ଡଳ ଭାଙ୍ଗିପାରେ । ଓଡ଼ିଶା ଆସେମ୍ବ୍ଲିରେ କଂଗ୍ରେସ ଦଳରେ ୭୦ ଜଣ ସଭ୍ୟ ଅଛନ୍ତି । ଏମାନଙ୍କ ମଧ୍ୟରୁ ୮।୧୦ ଜଣ କୌଣସି କାରଣରୁ ଅନୁପସ୍ଥିତ ରହିଗଲେ, ବିରୋଧୀ ଦଳ ମଧ୍ୟ ଅନାସ୍ଥା ପ୍ରସ୍ତାବ ପାଶ୍ କରି ନେଇ ପାରିବେ । ବିଶେଷତଃ ବଜେଟ୍ ଅଧିବେଶନ ବେଳେ ସର୍କାରୀ ଦଳ ସାବଧାନ ରହିବା ଦରକାର । କାରଣ ବଜେଟ୍ ଭୋଟକୁ ମାନସ ଦେଇ ଗୃହୀତ । ଏ ସମୟରେ କୌଣସି ଦିନ ସର୍କାରୀ ଦଳ ଭିତରେ ସାମୟିକ ଅବହେଳା ଦେଖାଗଲେ, ବିରୋଧୀ ଦଳ ଏକଜୁଟ ହୋଇ କୌଣସି ଗୋଟିଏ ବିଭାଗର ଖର୍ଚ୍ଚ ନାମଞ୍ଜୁର କରି ଦେଇ ପାରନ୍ତି । ତାହାହେଲେ ସେହିଦିନ ମନ୍ତ୍ରିମଣ୍ଡଳ ଭାଙ୍ଗି-ଯିବ । ମୋଟ ଉପରେ ମନ୍ତ୍ରିମଣ୍ଡଳ ଆସେମ୍ବ୍ଲି ଆଗରେ ଦାୟୀ । ଏମାନେ ନିଜର କାର୍ଯ୍ୟକଳାପ ପାଇଁ ଆସେମ୍ବ୍ଲିକୁ କୈଫିୟତ୍ ଦେବେ । ଯେତେଦିନ ପର୍ଯ୍ୟନ୍ତ ଆସେମ୍ବ୍ଲିର ସମର୍ଥନ ଏମାନଙ୍କୁ ମିଳିବ, ସେତେଦିନ ପର୍ଯ୍ୟନ୍ତ ଏମାନେ ମନ୍ତ୍ରୀ । ଆଉ ଗୋଟିଏ କଥା ଜଣେ ମନ୍ତ୍ରୀଙ୍କ ଦୋଷରେ ମଧ୍ୟ ସମୁଦାୟ ମନ୍ତ୍ରିମଣ୍ଡଳ ଭାଙ୍ଗିଯିବ । କାରଣ ମନ୍ତ୍ରିମଣ୍ଡଳ ଏକ ପରିବାର ପରି । ଜଣେ ମନ୍ତ୍ରୀଙ୍କ ବିରୋଧରେ ଅନାସ୍ଥା ପ୍ରସ୍ତାବ ପାଶ୍ ହୋଇଗଲେ, ଅନ୍ୟାନ୍ୟ ସମସ୍ତଙ୍କୁ ମଧ୍ୟ ଇସ୍ତଫା ଦେବାକୁ ପଡ଼ିବ । ତେଣୁ ସର୍କାରୀ କାର୍ଯ୍ୟ-କଳାପପାଇଁ ସମସ୍ତେ ଏକା ଭାବରେ ଦାୟୀ ।

## ସଭ୍ୟମାନଙ୍କର ସୁବିଧା

ଅସେମ୍ବ୍ଲିରେ ପ୍ରତ୍ୟେକ ସଭ୍ୟଙ୍କର ଗୁରୁତ୍ୱ ଅଛି । ଜଣ ଜଣଙ୍କ ଭୋଟରେ ମନ୍ତ୍ରିମଣ୍ଡଳ ଭାଙ୍ଗିଯାଇ ପାରେ । ଗଣତନ୍ତ୍ର ଶାସନ ଆଲୋଚନା ଓ ସମାଲୋଚନାରେ ଗଢ଼େ । ତେଣୁ ପ୍ରତ୍ୟେକ ସଭ୍ୟ ସରକାରୀ କାର୍ଯ୍ୟକୁ ଯେପରି ସ୍ୱାଧୀନ ଭାବରେ ଲକ୍ଷ୍ୟ କରନ୍ତି, ସେପରି ସ୍ୱଚ୍ଛରେ ଆଲୋଚନା ଓ ସମାଲୋଚନା କରି ପାରିବେ । ସରକାରୀ ଦଳର ଦୋଷ ଦୁର୍ବଳତା ଦେଖାଇ କୌଣସି ସମାଲୋଚନା କଲେ ବା କୌଣସି ସରକାରୀ କାର୍ଯ୍ୟକଳାପକୁ ଆକ୍ଷେପ କରି ସରକାର-ଙ୍କ ନିନ୍ଦା କଲେ, ସେମାନଙ୍କ ବିରୁଦ୍ଧରେ କିଛି କରାଯାଇ ପାରିବ ନାହିଁ । ଅସେମ୍ବ୍ଲି ଭିତରେ ସଭ୍ୟମାନେ ଯାହା କହିବେ, ତାହା ବିରୁଦ୍ଧରେ କଚେରୀରେ କେହି ମକଦ୍ଦମା କରି ପାରିବେ ନାହିଁ । କାରଣ ବାହାର କାହାରି ଏଥିରେ କିଛି ଅଧିକାର ନାହିଁ । ଗଣତନ୍ତ୍ର ଶାସନରେ ବିରୋଧୀ ଦଳର ଆବଶ୍ୟକତା ଖୁବ୍ ବେଶୀ । ସେଥି-ପାଇଁ ବିଲାତର ବିରୋଧୀ ଦଳ ନେତାଙ୍କୁ ସରକାରୀ ଦଳର ନେତାଙ୍କ ପରି ଦରମା ଦିଆଯାଏ ଓ ସମ୍ମାନ ଦେଖାଯାଏ । ଆମ ଦେଶରେ ମଧ୍ୟ ସେହି ରୀତି ଆରମ୍ଭ ହୋଇଛି । ଆମ ଦେଶରେ ଅବଶ୍ୟ ସେପରି ସଙ୍ଗଠିତ ବିରୋଧୀ ଦଳ ନାହାନ୍ତି । ଅନେକଙ୍କର ମତ ନାହିଁ କି କାର୍ଯ୍ୟକ୍ରମ ନାହିଁ । କେବଳ ସରକାର ବିରୋଧହିଁ ସେମାନଙ୍କର ଉଦ୍ଦେଶ୍ୟ । ବିରୋଧୀ ଦଳମାନେ ଉପଯୁକ୍ତ ମାର୍ଗରେ ଚାଲିଲେ ସରକାରଙ୍କର ଦୋଷ ଦୁର୍ବଳତା ଦୂର କରି ପାରନ୍ତେ । ଗଣତନ୍ତ୍ରରେ ଏମାନଙ୍କୁ ଯଥେଷ୍ଟ ସୁବିଧା ଦିଆଯାଇଛି । ଯେମାନେ ସରକାରୀ ଦଳର [illegible] ମିତ୍ର, [illegible] ପାଇ, ଦୋଷ ଦୁର୍ବଳତା ଅସେମ୍ବ୍ଲି ମେମ୍ବରଙ୍କ ଆଗରେ ବାଢ଼ି ସେମାନଙ୍କ

ସମର୍ଥନ ପାଇଁ ଚେଷ୍ଟା କରି ପାରିବେ । ଏଣୁ ଅସେମ୍ବଲୀ ଶାସନ କାର୍ଯ୍ୟରେ ସ୍ଥାନ ଦେଲେ ଅଧିକାରୀଙ୍କ ବିରୁଦ୍ଧରେ ମଧ୍ୟ ଜନମତ ସୃଷ୍ଟିହୋଇ ପାରିବ । ନାନା ପ୍ରକାର ପ୍ରଶ୍ନ ପଚାରି ସରକାରଙ୍କଠାରୁ ଶାସନ ଅବସ୍ଥା ଜାଣି ଏମାନେ ମଧ୍ୟ ସରକାରଙ୍କୁ ଦୃଢ଼ଭାବରେ ପଚାରି ପାରିବେ । ତେଣୁ ଗଣତନ୍ତ୍ର ଶାସନର ସଫଳତା ପାଇଁ ସଂଗଠିତ ବିରୋଧୀ ଦରକାର । ଇଂଲଣ୍ଡର ଉଦାହରଣ ଆମ ଆଗରେ ବିଦ୍ୟମାନ । ଇଂଲଣ୍ଡରେ ଗତ ନିର୍ବାଚନରେ ଶ୍ରମିକ ଦଳ ଜିତିଥିଲେ । ଏଥର ନିର୍ବାଚନରେ ଟୋରି ଦଳ ଜିତିଲେ । ବର୍ତ୍ତମାନ ଶ୍ରମିକଦଳ ଅସେମ୍ବ୍ଲି ଭିତରେ ବହୁ ଟୋରି ସରକାରଙ୍କର ନୀତି ଓ କାର୍ଯ୍ୟର ସମାଲୋଚନା କରି ନିଜ ଅଡ଼କୁ ଜନମତ ଟାଣିବାକୁ ଚେଷ୍ଟା କରୁଛନ୍ତି । କିନ୍ତୁ ତା ସଙ୍ଗେ ସଙ୍ଗେ, ଗଠନମୂଳକ କାମରେ ସରକାରଙ୍କ ସହିତ ସହଯୋଗ ମଧ୍ୟ କରୁଛନ୍ତି । ବିରୋଧୀ ଦଳର କାର୍ଯ୍ୟ କେବଳ ସମାଲୋଚନା ନୁହେଁ । ସମାଲୋଚନା ଏକ ଦିଗ, ଅନ୍ୟ ଦିଗ ଗଠନ ମୂଳକ କାମରେ ସହଯୋଗ । ଓଡ଼ିଶା ଅସେମ୍ବ୍ଲିରୁ ବିରୋଧୀ ଦଳ ଗଣତାନ୍ତ୍ରିକ ଭିତ୍ତିରେ ବିରୋଧୀ ଦଳର କାର୍ଯ୍ୟ ସମ୍ପାଦିତ ହେଲେ ଶାସନକ୍ଷେତ୍ରରେ ଅକଲ୍ୟାଣ ନ ହୋଇ କଲ୍ୟାଣ ହେବ ।

## ଗଭର୍ଣ୍ଣର ଓ ଆସେମ୍ବ୍ଲି

ଅସେମ୍ବ୍ଲି ଉପରେ ଗଭର୍ଣ୍ଣରଙ୍କର ମଧ୍ୟ କିଛି କର୍ତ୍ତୃତ୍ଵ ଅଛି । ଗଭର୍ଣ୍ଣର ଇଚ୍ଛାକଲେ ଅସେମ୍ବ୍ଲିରେ ଭାଷଣ ଦେଇପାରିବେ । ଦରକାର ହେଲେ ଅସେମ୍ବ୍ଲି ଡକାଇ ପାରିବେ କିମ୍ବା ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ମଧ୍ୟ ବନ୍ଦ କରି ଦେଇପାରିବେ । ଏପରିକି ମନ୍ତ୍ରୀ ମାନଙ୍କୁ ମଧ୍ୟ ବରଖାସ୍ତ କରି ଦେବାର ଅଧିକାର ତାଙ୍କର ଅଛି ।

ଅସେମ୍ବ୍ଲିରେ ଯେଉଁ ସବୁ ଆଇନ ପାଶ୍ ହେବ, ତାହା ଗଭର୍ଣ୍ଣରଙ୍କ ମଞ୍ଜୁରି ପାଇଁ ଯିବ । ଗଭର୍ଣ୍ଣର ମଞ୍ଜୁରି ଦେଇ ପାରନ୍ତି କିମ୍ବା ନାହିଁ କରିଦେଇ ପାରନ୍ତି । ଦରକାର ହେଲେ ଏହା ଉପରେ ଆଲୋଚନା କରି ନିଷ୍ପତ୍ତି ବଦଳାଇବା ପାଇଁ ମଧ୍ୟ ଅସେମ୍ବ୍ଲିକୁ ଅନୁରୋଧ କରିପାରନ୍ତି । ଅସେମ୍ବ୍ଲି ବସି ନଥିଲେ ଗଭର୍ଣ୍ଣର ମଧ୍ୟ ଅସ୍ଥାୟୀ ସମୟ ପାଇଁ ଆଇନ ଜାରି କରି ପାରନ୍ତି । ଗଭର୍ଣ୍ଣରଙ୍କ ଉପରେ ଅସେମ୍ବ୍ଲିର କୌଣସି କ୍ଷମତା ନାହିଁ । ସେ ରାଷ୍ଟ୍ରପତିଙ୍କ ଦ୍ୱାରା ନିଯୁକ୍ତ ହୁଅନ୍ତି । ତେଣୁ ଅସେମ୍ବ୍ଲି ତାଙ୍କୁ ନିଯୁକ୍ତ କରିପାରିବେ ନାହିଁ କି ବରଖାସ୍ତ କରି ପାରିବେ ନାହିଁ । କିନ୍ତୁ ସମ୍ବିଧାନରେ ଗଭର୍ଣ୍ଣରଙ୍କ ହାତରେ ଅନେକ କ୍ଷମତା ଦିଆଯାଇଥିଲେ ମଧ୍ୟ ସାଧାରଣ ସମୟରେ ଗଭର୍ଣ୍ଣର ଏସବୁ କ୍ଷମତା ବ୍ୟବହାର କରିବେ ନାହିଁ । ଗଭର୍ଣ୍ଣର ମନ୍ତ୍ରିମଣ୍ଡଳଙ୍କର ପରାମର୍ଶ ଅନୁଯାୟୀ କାର୍ଯ୍ୟ କରିବେ । ତାଙ୍କ ନାମ ଅନୁସାରେ ଶାସନ ଚାଲିବ । କିନ୍ତୁ ମନ୍ତ୍ରି-ମଣ୍ଡଳ ପ୍ରକୃତରେ ଶାସନ ଚଳାଇବେ । ତେଣୁ ଗଭର୍ଣ୍ଣରଙ୍କ ଠାରୁ ମନ୍ତ୍ରିମଣ୍ଡଳଙ୍କର ପ୍ରକୃତରେ କ୍ଷମତା ଅଧିକ । କିନ୍ତୁ ରାଜ୍ୟରେ ଯଦି ଅରାଜକତା ସୃଷ୍ଟି ହୁଏ, ଆଇନଶୃଙ୍ଖଳା ରକ୍ଷା କରିବା କଷ୍ଟ ହୋଇ ପଡ଼େ କିମ୍ବା ଟଙ୍କା ପଇସାରେ ରାଜ୍ୟ ସରକାର ଦେବାଳିଆ ହୋଇ ଯାଆନ୍ତି ତାହାହେଲେ ସ୍ୱୟଂ ଗଭର୍ଣ୍ଣରଙ୍କୁ ସମସ୍ତ ଶାସନ ଚଳାଇବା ପାଇଁ ଭାର ଦିଆଯାଏ । ସେତେବେଳେ ଗଭର୍ଣ୍ଣର ଶାସନର ପ୍ରକୃତ ମାଲିକ ହୁଅନ୍ତି । ଅସେମ୍ବ୍ଲିରେ କୌଣସି ସଂଖ୍ୟାଗରିଷ୍ଠ ଦଳ ମନ୍ତ୍ରିମଣ୍ଡଳ ଗଢ଼ି ନ ପାରିଲେ ମଧ୍ୟ ଗଭର୍ଣ୍ଣର କ୍ଷମତା ଭାର ନିଜ ହାତକୁ ନିଅନ୍ତି ।

## ଆସେମ୍ବ୍ଲି ଓ ସ୍ପିକର୍

କିନ୍ତୁ ଗଭର୍ଣ୍ଣରଙ୍କ କ୍ଷମତା ଅସେମ୍ବ୍ଲିର ବାହାରେ । ଅସେମ୍ବ୍ଲି ଭିତରେ ସ୍ପିକର (ବା ଅସେମ୍ବ୍ଲି ସଭାପତି) ହିଁ ବଡ଼ । ତାଙ୍କର

ଘଣ୍ଟା ଅନୁଯାୟୀ ଅସେମ୍ବ୍ଲିର କାର୍ଯ୍ୟ ଚାଲିବ । ସେ ଯେତେବେଳେ ଯାହାକୁ କହିବାକୁ ଅନୁମତି ଦେବେ, ସେ ସେତେବେଳେ କହି ପାରିବେ । କୌଣସି ସଭ୍ୟଙ୍କର ଦୋଷ ବା ତ୍ରୁଟି ଦେଖିଲେ ତାଙ୍କୁ ଅସେମ୍ବ୍ଲି ଗୃହରୁ ମଧ୍ୟ ବାହାର କରି ଦେଇ ପାରିବେ । ଅସେମ୍ବ୍ଲିରେ କେଉଁ ପ୍ରସ୍ତାବ ଆଲୋଚନା ହେବ ବା କେଉଁ ପ୍ରସ୍ତାବ ଆଲୋଚନା ନହେବ, ଏସବୁ ତାଙ୍କର ଇଚ୍ଛା ଉପରେ । କୌଣସି ପ୍ରସ୍ତାବ ଉପରେ ମତଦ୍ୱୈଧ ହେଲେ ସେ ମଧ୍ୟ ତାହା ନିଷ୍ପତ୍ତି କରିବେ । ଅସେମ୍ବ୍ଲି ସ୍ପିକର ଅସେମ୍ବ୍ଲି ଭିତରେ ଶୃଙ୍ଖଳା ରକ୍ଷା କରିବେ । କୌଣସି ସଭ୍ୟ ଅସେମ୍ବ୍ଲି ଗୃହ ଛାଡ଼ି ବାହାରକୁ ଗଲେ ବା ଅସେମ୍ବ୍ଲି ଗୃହ ଭିତରେ ପ୍ରବେଶ କଲେ, ତାଙ୍କର ସମ୍ମତି ନେବାକୁ ପଡ଼ିବ । ଏମନ୍ତ ଭାବରେ ସ୍ପିକରଙ୍କ କ୍ଷମତା ଅସେମ୍ବ୍ଲି ଭିତରେ ମନ୍ତ୍ରୀର କିମ୍ବା ପ୍ରଧାନମନ୍ତ୍ରୀଙ୍କଠାରୁ ମଧ୍ୟ ଅଧିକ । ଅନ୍ୟ ଅର୍ଥରେ ସେ ଅସେମ୍ବ୍ଲିର ପରିଚାଳକ । ତଥାପି ଅସେମ୍ବ୍ଲି ସଭ୍ୟ ମାନଙ୍କର ସ୍ପିକରଙ୍କ ଉପରେ ମଧ୍ୟ କର୍ତ୍ତୃତ୍ୱ ରହିଛି, ସେମାନେ ମଧ୍ୟ ସ୍ପିକରଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ପାସ୍ କରି ପାରିବେ । ତେଣୁ ତାଙ୍କର ଦକ୍ଷତା, ସାଧୁତା ଓ ନିରପେକ୍ଷତା ଉପରେ ଅସେମ୍ବ୍ଲିର ମର୍ଯ୍ୟାଦା ସମ୍ପୂର୍ଣ୍ଣ ଭାବରେ ନିର୍ଭର କରେ ।

# ଜିଲ୍ଲା ଶାସନ

ପ୍ରତ୍ୟେକ ରାଜ୍ୟ କେତୋଟି ଜିଲ୍ଲାରେ ବିଭକ୍ତ । ଆମ ଓଡ଼ିଶାରେ ୧୩ଟି ଜିଲ୍ଲା । ଏହି ଜିଲ୍ଲାର ମାଲିକ ହିସାବରେ ଜିଲ୍ଲା କଲେକ୍ଟର ଅଛନ୍ତି । ଏହାଙ୍କୁ ମଧ୍ୟ ଜିଲ୍ଲା ମାଜିଷ୍ଟ୍ରେଟ କହନ୍ତି । ଏମାନେ ହେଉଛନ୍ତି ଜିଲ୍ଲାର ସର୍ବେସର୍ବା । ଜିଲ୍ଲାରେ ଏମାନେ ହେଉଛନ୍ତି ସରକାରଙ୍କର ପ୍ରତିନିଧି । ଏମାନଙ୍କୁ ସାଧାରଣ ଲୋକେ ଖୋଦ୍ ସରକାର ବୋଲି ଭାବନ୍ତି । କଲେକ୍ଟରର ଶାସନର ମେରୁଦଣ୍ଡ । ଜିଲ୍ଲାରେ ଯେ କୌଣସି ଗୋଳମାଳ ହେଲେ ଜିଲ୍ଲା ମାଜିଷ୍ଟ୍ରେଟ ତାକୁ ଦେଖିବେ । ସହକାରୀ ଅଫିସରମାନଙ୍କ ଉପରେ ସେ ଭାର ବାଣ୍ଟି ଦେଇ ପାରନ୍ତି—କିନ୍ତୁ ଦାୟିତ୍ୱ ତାଙ୍କର । ଦାୟିତ୍ୱ ବାଣ୍ଟି ଦେଇ ପାରିବେ ନାହିଁ ।

ଜିଲ୍ଲା ମାଜିଷ୍ଟ୍ରେଟଙ୍କର ଅନେକ କାମ । କଲେକ୍ଟର ହିସାବରେ ଭୂରାଜସ୍ୱ ଆଦାୟ କରନ୍ତି । ସେ ଅବଶ୍ୟ ନିଜେ ଆଦାୟ କରନ୍ତି ନାହିଁ । ତାଙ୍କର ସହକାରୀ ହିସାବରେ ନାଏବ ତହସିଲଦାରମାନେ ଆଦାୟ କରନ୍ତି । କିନ୍ତୁ ଦାୟିତ୍ୱ ତାଙ୍କର । ଭୂରାଜସ୍ୱ ବ୍ୟତୀତ ଅନ୍ୟାନ୍ୟ ରାଜସ୍ୱ ଆଦାୟ କରିବା ଭାର ମଧ୍ୟ ତାଙ୍କରି ଉପରେ । ଜିଲ୍ଲା ଟ୍ରେଜେରୀ ତାଙ୍କ ଦାୟିତ୍ୱରେ । ଏହି ଜିଲ୍ଲା ଟ୍ରେଜେରୀରୁ ଭିନ୍ନ ଭିନ୍ନ ବିଭାଗକୁ ଟଙ୍କା ଯାଏ ଓ ଏଥିରୁ ବିଭିନ୍ନ ବାବଦରେ ଖର୍ଚ୍ଚ ହୁଏ । ତାଡ଼ି, ମଦ ଓ ଅଫିମ ପ୍ରଭୃତି ଦୋକାନମାନେ ବିକ୍ରି କରିବାକୁ ଚାହାନ୍ତି, ସେମାନେ କଲେକ୍ଟରଙ୍କ ନିକଟରୁ ଜନ ଅନୁମତି ଆଣନ୍ତି ।

ଦୁର୍ଭିକ୍ଷ ହେଲେ ସାହାଯ୍ୟ ଯୋଗାଇବା ଭାର ତାଙ୍କର ଦାୟିତ୍ୱରେ । କୃଷକମାନେ କୃଷି ପାଇଁ ଋଣ ନେଉଥିଲେ, ତାହା କଲେକ୍ଟରଙ୍କ ଦରଖାସ୍ତ କରିବା କଥା । ଭୂରାଜସ୍ୱ ଛାଡ଼ିବା କଥା ବିଚାର ହେଲେ, କଲେକ୍ଟର ସରକାରଙ୍କୁ ସୁପାରିଶ୍ କରନ୍ତି । ତେବେ ଯାଇଁ ସରକାର ସେ ବିଷୟରେ ନିଷ୍ପତ୍ତି ନେବେ । ଏପରି ଅନେକ କ୍ଷେତ୍ରରେ, ଏ ସବୁ କଲେକ୍ଟରଙ୍କ କ୍ଷମତା ।

କିନ୍ତୁ କଲେକ୍ଟର ତ ଖାଲି କଲେକ୍ଟର ନୁହନ୍ତି, ସେ ବି ମାଜିଷ୍ଟ୍ରେଟ୍ । ମାଜିଷ୍ଟ୍ରେଟ ହିସାବରେ ସେ ବି ମକଦ୍ଦମା ବିଚାର କରି ପାରନ୍ତି । ସେ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ । ତେଣୁ ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ମାଜିଷ୍ଟ୍ରେଟଙ୍କ ମକଦ୍ଦମା ଉପରେ ସେ ଅପିଲ୍ ଶୁଣି ପାରନ୍ତି । ଅନ୍ୟ ଅନ୍ୟ ମାଜିଷ୍ଟ୍ରେଟ କଚେରୀ ତଦାରଖ କରି ପାରନ୍ତି । ଏତକ ବଡ଼ କଥା । ଜିଲ୍ଲାରୁ ଅପରାଧ ଦୂର କରି ଶାନ୍ତି ପ୍ରତିଷ୍ଠା କରିବା ତାଙ୍କର ପ୍ରଧାନ କାମ । ଯଦି କେଉଁଠାରେ ଦଙ୍ଗାହାଙ୍ଗାମା ହେଲା, ସେ ତାର ପ୍ରତିରୋଧ କରନ୍ତି—ଯେପରି ଆଉ ନ ହୁଏ ସେଥିପାଇଁ ବ୍ୟବସ୍ଥା କରନ୍ତି । ଏଥିପାଇଁ ଜିଲ୍ଲାର ପୁଲିସଙ୍କୁ ତାଙ୍କ ଅଧୀନରେ ରଖାଯାଇଛି । ପୁଲିସ୍ ଅଫିସରମାନେ ମଧ୍ୟ ତାଙ୍କ କଥା ମାନି ଚଳନ୍ତି । ଜିଲ୍ଲାରେ ଆଇନ୍ ରକ୍ଷା କରିବା ପାଇଁ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ସାହାଯ୍ୟ କରନ୍ତି । ଶାନ୍ତି ଭଙ୍ଗର ଆଶଙ୍କା ହେଲେ ସେ ସଭା ଓ ଶୋଭାଯାତ୍ରା ବନ୍ଦ କରି ଦେଇ ପାରନ୍ତି, ନିଷେଧାଜ୍ଞା ଜାରି କରି ପାରନ୍ତି । ଅସ୍ତ୍ରଶସ୍ତ୍ର ରଖିବା ପାଇଁ ତାଙ୍କଠାରୁ ମଧ୍ୟ ଅନୁମତି ନେବାକୁ ପଡ଼ିବ । ଏଥିରୁ ଦେଖା-ଯିବ ଯେ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଶାସନ ଓ ବିଚାର ପାଇଁ ଅନେକ କ୍ଷମତା ଦିଆଯାଇଛି ।

କେବଳ ସେତିକି ନୁହେଁ । ସେ ମଧ୍ୟ କାରାଗାର ପରିଦର୍ଶନ କରି ପାରିବେ । କାରାଗାରରେ ଯେଉଁ ବନ୍ଦୀମାନେ ଅଛନ୍ତି ସେମାନଙ୍କ ପ୍ରତି କପରି ଭାବରେ ବ୍ୟବହାର କରାଯାଉଛି, ତା ମଧ୍ୟ ତାଙ୍କର ଦେଖିବାର କଥା । କୌଣସି ଲୋକ ଶାନ୍ତି ଭଙ୍ଗ କରିବ ବୋଲି ସନ୍ଦେହ କରାଗଲେ, ଜିଲ୍ଲା ମାଜିଷ୍ଟ୍ରେଟ ତାଙ୍କ ବିରୁଦ୍ଧରେ ଅଭିଯୋଗ ଆଣି ତାଙ୍କ ବିରୁଦ୍ଧରେ ମକଦ୍ଦମା ଚଳାଇ ପାରିବେ । ଏଣେ ବିଚାରପତି ହିସାବରେ ମକଦ୍ଦମା ମଧ୍ୟ ବିଚାର କରି ଦଣ୍ଡ ଦେଇ ପାରିବେ । ପୁଣି କାରାଗାରର ପରିଦର୍ଶକ ହିସାବରେ କାରାଗାରରେ କିପରି ଭାବରେ ବନ୍ଦୀଙ୍କୁ ବ୍ୟବହାର କରାଯାଉଛି, ତା ଦେଖିବେ । ତେଣୁ ଅଭିଯୋଗ କାରୀ, ବିଚାରପତି ଓ କାରାଗାର ପରିଚାଳକ ହିସାବରେ ତିନୋଟି କ୍ଷମତା ତାଙ୍କ ହାତରେ ନ୍ୟସ୍ତ ଅଛି ( The Prosecutor, the Judge and the Jailor ) । ତେଣୁ ଅନେକ ଲୋକ ସନ୍ଦେହ କରନ୍ତି ଯେ ଏହା ଫଳରେ ଅଭିଯୁକ୍ତ ବ୍ୟକ୍ତିଙ୍କୁ ପ୍ରକୃତ ନ୍ୟାୟ ମିଳି ପାରିବ ନାହିଁ । ଯଦି ଜିଲ୍ଲା ମାଜିଷ୍ଟ୍ରେଟଙ୍କର କା ଉପରେ ରାଗ ଥାଏ, ତା ହେଲେ ସେ ଖୁବ୍ ସହଜରେ ସେହି ଲୋକ ବିରୁଦ୍ଧରେ ଅଭିଯୋଗ ଆଣି, ତାକୁ ଗିରଫ କରି ପାରିବେ ଓ ବିଚାର କରି ତାକୁ ଦୋଷୀ ବୋଲି ସାବ୍ୟସ୍ତ କରି ଦଣ୍ଡ ଦେଇ ପାରିବେ । ତେଣୁ ଅନେକ ଅନେକ ଲୋକ ଶାସନ କ୍ଷମତା ଓ ବିଚାର କ୍ଷମତାକୁ ଅଲଗା କରିବାକୁ ମତ ଦେଉଛନ୍ତି । କିନ୍ତୁ ଦେଶର ଆର୍ଥିକ ଅବସ୍ଥା ଯୋଗୁଁ ଏ ଦିଗରେ ଏ ପର୍ଯ୍ୟନ୍ତ ବିଶେଷ କିଛି ଉଦ୍ୟମ କରାଯାଇ ନାହିଁ । ଜିଲ୍ଲା ମାଜିଷ୍ଟ୍ରେଟଙ୍କଠାରୁ ବିଚାର କ୍ଷମତା ଛାଡ଼ି ନେଲେ ଆହୁରି ଅନେକ ନୂଆ ଅଫିସର ନିଯୁକ୍ତ କରିବାକୁ ପଡ଼ିବ ଓ ଏହା ଫଳରେ ଅନେକ ଅଧିକ ଟଙ୍କା ଖର୍ଚ୍ଚ ହେବ । ରାଜ୍ୟ ସରକାର ଏ ଖର୍ଚ୍ଚ

ବାହାର କରି ପାରନ୍ତି ନାହିଁ । ତେବେ ଏ ଦଗରେ ଉଦ୍ୟମ ହେବା ଉଚିତ ବୋଲି ସମସ୍ତେ ଅନୁଭବ କଲେଣି ।

ଜିଲ୍ଲା ମାଜିଷ୍ଟ୍ରେଟଙ୍କର ଯେଉଁ ଶାନ୍ତି ଶାସନ ଓ ବିଚାର କ୍ଷମତା ଅଛି ତା ଛଡ଼ା, ସେ ହିଁ ଜିଲ୍ଲାର ଅର୍ଥନୀତି ସମ୍ବନ୍ଧୀୟ ସଂଗଠନର ପରିଚାଳକ । ସେ ଜାତିଗଠନର ଦରକାରୀ ପ୍ରସ୍ତାବ କରିବେ, ସେଥିର କାଟଛାଣ୍ଟ ହେବ ଆଉ ପ୍ରସ୍ତାବ ନେବେ ଓ ଯାହା କରାଯାଉ ହେଉଛି ତାର ତାଲିକା ରଖିବେ । ଏ ସବୁ ବିଷୟରେ ସରକାର ତାଙ୍କର ମତ ନେଉଛନ୍ତି । ସେ ତାଙ୍କର ସହକାରୀ ଅଫିସରମାନଙ୍କ ଦ୍ୱାରା ସବୁ କାର୍ଯ୍ୟ ବୁଝାଉଛନ୍ତି ବି, ଏ ସବୁ ଖବର ମାସିକ ସରକାରଙ୍କ-ପାଖରେ ପଠାନ୍ତି । ଜିଲ୍ଲାରେ ଯେତେ ସବୁ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିବ, ସେ ବିଷୟରେ ସେ ସରକାରଙ୍କୁ ଖବର ଦେବେ । ଦରକାର ପଡ଼ିଲେ ସରକାରଙ୍କର ହୁକୁମକୁ ପରିଚାଳନା କରିବେ । କୌଣସି ଲୋକର ସମ୍ପତ୍ତି କୋର୍ଟ ଅଫ୍ ଓ୍ୱାର୍ଡସ ହେଲେ, ତାର ସେ ମଧ୍ୟ ପରିଚାଳନା କରିବେ । ଏହା ବ୍ୟତୀତ ଜେଲ କାରଖାନା, ସମବାୟ ସମିତି, କୃଷି ଫାର୍ମ, ଅଫିସ ସ୍କୁଲ ପ୍ରଭୃତି ଅନୁଷ୍ଠାନ ମଧ୍ୟ ପରିଦର୍ଶନ କରି ପାରନ୍ତି । ସୁତରାଂ ଅର୍ଥନୀତି କ୍ଷେତ୍ରରେ ତାଙ୍କର ଅନେକ କ୍ଷମତା ଅଛି । ଜିଲ୍ଲାରେ କୃଷି, ଶିଳ୍ପ, ବ୍ୟବସାୟ, ସମବାୟ ଅନୁଷ୍ଠାନ ପ୍ରଭୃତି ପରିଚାଳନା କରିବାପାଇଁ ଭିନ୍ନ ଭିନ୍ନ ସରକାରୀ ଅନୁଷ୍ଠାନ ଅଛି—ଜିଲ୍ଲା ମାଜିଷ୍ଟ୍ରେଟ ଏ ସବୁର ତତ୍ତ୍ୱାବଧାରକ ଅଟନ୍ତି । କିନ୍ତୁ ଏ ସବୁ ଭିନ୍ନ ଭିନ୍ନ ବିଭାଗ କାର୍ଯ୍ୟରେ ସହଯୋଗ ଆଣି ଜିଲ୍ଲାର ଶାସନ ସୁଶୃଙ୍ଖଳରୂପେ ପରିଚାଳନା କରିବା ପାଇଁ ତାଙ୍କୁ ଅଧିକାର ଦିଆ ଯାଇଛି ।

ଏଥିରୁ ଦେଖାଯିବ ଯେ ଜିଲ୍ଲାମାଜିଷ୍ଟ୍ରେଟଙ୍କର ଅନେକ ଯୋଗ୍ୟତା ଦରକାର । ସେ ଅଧିକ ଜାଣିଥିବେ, ତାହେଲେ

ଗୋଷ୍ଠୀ ଅଧିକ କି ନେତାଙ୍କର ଚାଲି କରିପାରିବ । ତେଣୁ ଶାସନର ଭାର ମନ୍ତ୍ରୀ ଓ ଅଫିସରମାନଙ୍କ ଉପରେ ପୂରାପୂରି ନିର୍ଭର କରେ । ଯେତେବେଳେ ଏ ଦେଶରେ ବିଦେଶୀ ଶାସନ ଥିଲା, ସେତେ-ବେଳେ ଜିଲ୍ଲା ମାଜିଷ୍ଟ୍ରେଟଙ୍କର ବେଶୀ ପ୍ରକାର କାମ ନଥିଲା । ସେମାନେ କେବଳ ଜିଲ୍ଲାରେ ଆଇନ ରକ୍ଷା କରିବାକୁ ଚେଷ୍ଟା କରୁଥିଲେ । ସେତେବେଳେ ଗଣ ଜାଗରଣ ପ୍ରକାର ବେଶୀ ନଥିଲା କିନ୍ତୁ କ୍ଷମତା ଥିଲା ଖୁବ ଅଧିକ । ତେଣୁ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ନାଁ ଶୁଣିଲେ ଲୋକମାନେ ଥରହର ହେଉଥିଲେ । ଅଫିସରମାନଙ୍କୁ ଜନ-ସାଧାରଣଙ୍କଠାରୁ ଦୂରରେ ରଖି ଶାସନ ପ୍ରତି ଏକ ପ୍ରକାର ଭୟ ଜନ୍ମାଇ ବ୍ରିଟିଶ ସରକାର ତାଙ୍କର ଶାସନ ଖୁବ୍ ସୁରୁଖୁରୁରେ ଚଳାଉଥିଲେ । ଏବେ ସେ ଅବସ୍ଥା ବଦଳି ଯାଇଛି । ଜିଲ୍ଲା ମାଜିଷ୍ଟ୍ରେଟଙ୍କ କାମ ବଢ଼ି ଯାଇଛି । କିନ୍ତୁ କ୍ଷମତା କମିଛି । ଅସେମ୍ବ୍ଲି ସଭ୍ୟମାନେ ଜିଲ୍ଲାରେ ଅଳ୍ପ ଏକ ଏକ ଅଧିକାରୀ ହୋଇ ବସିଛନ୍ତି । ସେମାନଙ୍କର ମନ୍ତ୍ରୀମାନଙ୍କ ସହିତ ପ୍ରତ୍ୟକ୍ଷ ଭାବରେ ସମ୍ପର୍କ । ଜିଲ୍ଲାମାଜିଷ୍ଟ୍ରେଟଙ୍କ ଅଗୋଚରରେ ମନ୍ତ୍ରୀଙ୍କୁ କହି ସେମାନେ ନିଜ ନିଜ ଅଞ୍ଚଳ ପାଇଁ କାମ ସବୁ ଆଦାୟ କରି ପାରିବେ । ଅଫିସରମାନେ ଏଥିପାଇଁ ଅନେକ ସମୟରେ ବିଚଳିତ, କିନ୍ତୁ ଅଫିସରମାନଙ୍କର ବୁଝିବା ଉଚିତ ଯେ ଅସେମ୍ବ୍ଲି ସଭ୍ୟମାନେ ଲୋକ ପ୍ରତିନିଧି । ସେମାନେ ଯେଉଁ ଅଞ୍ଚଳରୁ ନିର୍ବାଚିତ ହୋଇ ଆସିଛନ୍ତି, ସେ ଅଞ୍ଚଳ ପାଇଁ ଯଦି କିଛି କାମ ନକରାଇବେ, ତାହେଲେ ଅନ୍ୟଥରକୁ ନିର୍ବାଚିତ ହୋଇ ଆସିବା ଅସମ୍ଭବ ହୋଇ ପଡ଼ିବ । ତେଣୁ ସେମାନେ ସବୁପ୍ରକାର ଉଦ୍ୟମ କରନ୍ତି । ମନ୍ତ୍ରୀମାନେ ଦଳର ଲୋକ ହୋଇଥିବାରୁ, ତାଙ୍କ କଥା ପ୍ରଥମେ ଶୁଣନ୍ତି । କାରଣ ସେମାନଙ୍କ ଉପରେ ମନ୍ତ୍ରୀମାନଙ୍କର ମନ୍ତ୍ରୀତ୍ୱ ନିର୍ଭର କରୁଛି ।

ଅଛୁ । ତେଣୁ ସେମାନେ କର୍ମକର୍ତ୍ତାମାନଙ୍କ କାର୍ଯ୍ୟକଳାପ ଉପରେ ମନ୍ତବ୍ୟ ଦେବାକୁ ଅକ୍ଷମ ହେଉଛନ୍ତି । ସମାଲୋଚନାକୁ ଅପମାନ ନ କରି, କର୍ମକର୍ତ୍ତାମାନେ ଉପଯୁକ୍ତ ମାର୍ଗରେ ଶାସନ ପରିଚାଳନା କଲେ, ସମାଲୋଚନା ଜନିତ ଓ କର୍ମକର୍ତ୍ତା ଓ ଜନସାଧାରଣଙ୍କ ଭିତରେ ଉପଯୁକ୍ତ ବନ୍ଧୁତା ପ୍ରତିଷ୍ଠିତ ହୋଇ ପାରେ ।

---

## ଗଣତନ୍ତ୍ର-ଶାସନ

ଗଣତନ୍ତ୍ର ଏକ ଶାସନ ପ୍ରଣାଳୀ । ଅତି ପ୍ରାଚୀନ କାଳରୁ ଏହାର ଦୃଷ୍ଟାନ୍ତ ମିଳେ ଅଛି । ଅନେକ ବଡ଼ ବଡ଼ ମନୀଷୀ ଏହା ସମ୍ପର୍କରେ ମତ ଦେଇଛନ୍ତି । ତଥାପି ଗଣତନ୍ତ୍ର ପ୍ରତି ସାଧାରଣ ଲୋକଙ୍କର ବିଶ୍ୱାସ ଅଟୁଟ ନାହିଁ । ଗଣତନ୍ତ୍ର ଦ୍ୱାରା ଅମଙ୍ଗଳ ଉନ୍ନତି ଓ ଅସୁବିଧା ଦୂର ହୋଇ ପାରିବ ନାହିଁ ବୋଲି ଅନେକ ବୁଦ୍ଧିଜୀବୀ ମଧ୍ୟ ସ୍ୱୀକାରୁଛନ୍ତି । ପ୍ରଥମ ମହାଯୁଦ୍ଧବେଳେ ଆମେରିକାର ରାଷ୍ଟ୍ରପତି ଉଇଲସନ୍ ଘୋଷଣା କଲେ ଯେ ପୃଥିବୀରେ ଗଣତନ୍ତ୍ରକୁ ସୁରକ୍ଷିତ କରିବା ପାଇଁ ଏହି ଯୁଦ୍ଧରେ ଯୋଗ ଦେବା ଦରକାର ପଡ଼ୁଛି । ଯୁଦ୍ଧ ଶେଷ ହେଲା । କିନ୍ତୁ ଗଣତନ୍ତ୍ର ନିଜକୁ ସ୍ଥାପନ କରି ପାରିଲା ନାହିଁ । ପ୍ରଥମ ମହାଯୁଦ୍ଧ ଓ ଦ୍ୱିତୀୟ ମହାଯୁଦ୍ଧ ଭିତରେ ତୁର୍କୀ, ଇଟାଲି, ପର୍ତ୍ତୁଗାଲ୍, ଯୁଗୋସ୍ଲାଭିଆ, ଜର୍ମାନୀ ଜାପାନ ପ୍ରଭୃତି ଅନେକ ଦେଶରେ ଏକଛତ୍ର ଶାସନ ମୁଣ୍ଡଟେକି ଉଠିଲା । ଏପରିକି ମାର୍କ୍ସଙ୍କର ବୈଜ୍ଞାନିକ ସାମ୍ୟବାଦ ନାଁରେ ଋଷିଆରେ ୧୯୧୭ ମସିହାରେ ଯେଉଁ ପ୍ରଗତିଶୀଳ ସାମାଜିକ ବିପ୍ଳବ ସୃଷ୍ଟି ହେଲା, ଶେଷରେ ତା ମଧ୍ୟ ଏକଛତ୍ର ଶାସନରେ ଯାଇ ପହଞ୍ଚିଲା । ଦ୍ୱିତୀୟ ମହାଯୁଦ୍ଧରେ ହିଟଲର୍, ମୁସୋଲିନି ଓ ତୋଜୋ ପ୍ରଭୃତି ପରାସ୍ତ ହେଲେ ସତ କିନ୍ତୁ ଏକଛତ୍ର ଶାସନର ଅବସାନ ହେଲା ନାହିଁ । ବରଂ କେତେକ କ୍ଷେତ୍ରରେ ଏହାର ଶକ୍ତି ବଢ଼ିଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁ ଗଣତନ୍ତ୍ରର ପୂଜା ଗ୍ରୀକ୍‌ମାନଙ୍କଠାରୁ ଆରମ୍ଭ ହୋଇଛି, ତାହାକୁ ବହୁ ରାଜନୀତିଜ୍ଞମାନେ ଜୀବନରେ ଏକ ଧାରା ବା ପଦ୍ଧତି ଏବଂ ଜୀବନ-ଦର୍ଶନ ବୋଲି ଆଖ୍ୟା ଦେଇଛନ୍ତି,

ଏପ୍ରକାର କଠିନ ସମସ୍ୟା ସମାଧାନ କରିବା ଦରକାର ସତ୍ତ୍ୱେ ଯେ, ସାଧାରଣ ଲୋକମାନଙ୍କ ପକ୍ଷରେ ଏତେ ସବୁ ବୁଝିବା ମଧ୍ୟ ସମ୍ଭବ ହୋଇପାରୁନାହିଁ । ତେଣୁ ଲୋକ ଶାସନ ପଦ୍ଧତିରେ ପ୍ରଜାତନ୍ତ୍ରମୂଳକ ଶାସନକୁ ଅଳ୍ପ କେତେଜଣ ବୋଲି ଧରି ନେଉଛି । ସାଧାରଣ ଲୋକମାନେ ଭୋଟ ଦେଇ ସେମାନଙ୍କର ପ୍ରତିନିଧି ବାଛୁଛନ୍ତି ଓ ଏମାନେ ଜନସାଧାରଣଙ୍କ ପାଇଁ ଶାସନ ପରିଚାଳନା କରୁଛନ୍ତି । ପ୍ରତି ପାଞ୍ଚବର୍ଷରେ ଥରେ ଥରେ ନିର୍ବାଚନ ହେଉଅଛି । ପାର୍ଲା-ମେଣ୍ଟରେ ଅଳ୍ପ ବହୁମତ ପାଇଲେ ପରେ ନିର୍ବାଚନ ଦ୍ୱାରା ଜନମତ ଯାଚାଉଛନ୍ତି । ଯେଉଁ ରାଜନୈତିକ ଦଳ ସରକାର ଗଢ଼ୁଛନ୍ତି, ସେମାନେ ଜନସାଧାରଣଙ୍କ ଅପ୍ରିୟଭାଜନ ହୋଇ ପଡ଼ିଲେ, ନୂତନ ନିର୍ବାଚନରେ ପରାସ୍ତ ହୋଇ ଯାଉଛନ୍ତି । ଅନ୍ୟ ଏକ ଦଳ ଶାସନ ଗାଦି ଦଖଲ କରୁଛନ୍ତି ।

## କ୍ଷମତା ନିୟନ୍ତ୍ରଣ

ନିଜପାଇଁ ନିଜ ସରକାର ବାଛିବା ଏକ ବଡ଼ କ୍ଷମତା । ଗଣତନ୍ତ୍ରରେ ଅବଶ୍ୟ ପ୍ରତ୍ୟେକ ଲୋକର ମନ ଅନୁଯାୟୀ ସରକାର ଗଢ଼ାଯାଏ ନାହିଁ ସଂଖ୍ୟାଗରିଷ୍ଠ ମତକୁ ଅନ୍ୟ ଜନମତ ବୋଲି ଧରି ନେଉ । କାରଣ ପ୍ରତ୍ୟେକ ଲୋକର ମତ ସମାନ ହେବା କେବେ ସମ୍ଭବ ନୁହେଁ । ନିଜପାଇଁ ନିଜ ସରକାର ବାଛିବା କ୍ଷମତା ନ ଥିଲେ ଲୋକମାନେ ସରକାରର କାର୍ଯ୍ୟକଳାପକୁ କୌଣସି ନିୟନ୍ତ୍ରଣ କରି ପାରନ୍ତେ ନାହିଁ । କ୍ଷମତା ଏକ ବଡ଼ ଯୋଗ । ଯେଉଁ ଦଳରେ ରହିଲେ ବି କ୍ଷମତା ପାଇଲେ, ଶାସନ ହୋଇ ଯିବାରେ ବହୁତ ସମ୍ଭାବନା । ତେଣୁ ଯେତେ ଅଧିକ ଦଳ ହୁଅନ୍ତୁ ନା ପ୍ରଗତିଶୀଳ ରାଜନୈତିକ ଦଳ ହୁଅନ୍ତୁ, ସେମାନଙ୍କ କ୍ଷମତା ସୀମାକୁ ଉଚିତ

ରହିବାକୁ ଏପରି ସୁଯୋଗ୍ ନ ଥାଏ, ତା ହେଲେ ସେମାନେ ଜନସାଧାରଣଙ୍କର ମତ ଅନୁଯାୟୀ କାର୍ଯ୍ୟ କରି ପାରିବେ ନାହିଁ । ସେଥିପାଇଁ ସେମାନଙ୍କୁ ଜନସାଧାରଣଙ୍କଠାରେ ଦାୟୀ ହୋଇ ରହିବାକୁ ହେବ । ଏଥି ନିର୍ବାଚନ ହୋଇଗଲେ ମଧ୍ୟ ଚଳିବ ନାହିଁ । ଥରେ ନିର୍ବାଚନରେ ଜିଣି କ୍ଷମତାକୁ ଆସି ଅନେକ ଏକଛତ୍ର ଶାସକ ନିଜର ପ୍ରଭୁତ୍ୱ ଏପରି ଭାବରେ ବିସ୍ତାର କରନ୍ତି ଯେ ଜନସାଧାରଣଙ୍କ ସହିତ ତାଙ୍କର କୌଣସି ସମ୍ପର୍କ ରହୁନି । ଏଣୁ ଗଣତନ୍ତ୍ର ଶାସନରେ ପ୍ରତି ୪।୫ ବର୍ଷରେ ଥରେ ଥରେ ନିର୍ବାଚନ ହେବା ଆବଶ୍ୟକ । ତାହେଲେ ସରକାର ଗଠନ କରିବା ଓ ବାତିଲ କରିବାରେ ଜନସାଧାରଣଙ୍କର ପୂର୍ଣ୍ଣ ଅଧିକାର ରହିବ । ଏଣୁକି ସରକାର ଗଠନ କରିବାଠାରୁ ଗୋଟିଏ ସରକାରକୁ ବାତିଲ କରି ଅନ୍ୟ ଗୋଟିଏ ସରକାର ପ୍ରତିଷ୍ଠା କରିବା ଅଧିକାର ଜନସାଧାରଣଙ୍କ ପକ୍ଷରେ ଅଧିକ ମୂଲ୍ୟବାନ । କାରଣ ଦ୍ୱିତୀୟଟିରେ ସାଧାରଣ ମନରେ ଯେତେ ଆନନ୍ଦ ଆସେ, ପ୍ରଥମଟିରେ ତାହା ମିଳେନାହିଁ । ଏହି ଦୁଇଟି ଅଧିକାରର ସମାବେଶରେ ଗଣତନ୍ତ୍ର ସଫଳ ହୁଏ ।

## ମୂର୍ଖ-ଶାସନ ନା ଗୁଣର ବିକାଶ

ଅନେକ ଯୁକ୍ତି କରନ୍ତି ଯେ ସରକାର ଗଢ଼ିବା କ୍ଷମତା ସାଧାରଣଲୋକମାନଙ୍କ ହାତରେ ଛାଡ଼ିଦେଲେ, ଦେଶରେ ଏକ ମୂର୍ଖ ଶାସନ ପ୍ରତିଷ୍ଠିତ ହେବ । କାରଣ ଆମ ଦେଶର ଅଧିକାଂଶ ଲୋକ ଅଶିକ୍ଷିତ । ମାତ୍ର ଶିକ୍ଷା ସହିତ ବୁଦ୍ଧିର ସମ୍ପର୍କ ସବୁବେଳେ ଘନିଷ୍ଠ ନୁହେଁ । ଅନେକ ଶିକ୍ଷିତ ଲୋକ ନିର୍ବୋଧ ଥିବାର ଦେଖାଯାଆନ୍ତି । ଅନେକ ଅଶିକ୍ଷିତ ଲୋକ ବୁଦ୍ଧିମାନ ମଧ୍ୟ ଅଛନ୍ତି । ସେତେବେଳେ

ଅଭାବ ଓ ଅସୁବିଧା ଯୋଗୁଁ ସେମାନଙ୍କର ବୁଦ୍ଧିର ବିକାଶ ହୋଇ-
ପାରୁନାହିଁ । ଯେଉଁମାନେ ଗଣତନ୍ତ୍ରରେ ବିଶ୍ୱାସ କରନ୍ତି, ସେମାନେ
ମାନନ୍ତି ଯେ ସାଧାରଣ ଲୋକର ସରକାର ବାଛିବା ପାଇଁ ଯଥେଷ୍ଟ
ଶକ୍ତି ଅଛି । ସରକାର ବାଛିବା ଓ ସରକାର ଚଳାଇବା ଏକା
କଥା ନୁହେଁ । ଯେଉଁମାନେ ସରକାର ଚଳାନ୍ତି, ସେମାନେ ରାଷ୍ଟ୍ରର
ଅନେକ ଜଟିଳ ସମସ୍ୟା ସମାଧାନ କରନ୍ତି । ସେଥିପାଇଁ ଯେଉଁ
ଜ୍ଞାନ ଓ ବିଚକ୍ଷଣତା ଦରକାର, ତାହା ସବୁ ଲୋକମାନଙ୍କର ନାହିଁ ।
କିନ୍ତୁ କେଉଁ ସରକାରକୁ ଗଲେ ଦେଶର ମଙ୍ଗଳ ହେବ, ଦେଶରେ
ଜମିଦାରୀ ରହିବ କି ନାହିଁ, କେଉଁ ରାଜନୀତିକ ଦଳର କାର୍ଯ୍ୟକ୍ରମ
ଭଲ—ଏ ସବୁ ମୌଳିକ କଥା ବିଷୟରେ ଏକ ସିଦ୍ଧାନ୍ତରେ
ପହଞ୍ଚିବା ସାଧାରଣ ଲୋକ ପକ୍ଷରେ ବେଶୀ କଷ୍ଟ କଥା ନୁହେଁ ।
ହୁଏତ ପ୍ରଥମରେ କିଛି କିଛି ଭୁଲ ହୋଇପାରେ । କିନ୍ତୁ ଗଣତନ୍ତ୍ରର
ବିକାଶ ସଙ୍ଗେ ସଙ୍ଗେ, ଏ ଭୁଲ ସୁଧୁରିଯିବ । ଯେଉଁମାନେ
ଏକଛତ୍ରବାଦରେ ବିଶ୍ୱାସ କରନ୍ତି, ସେମାନେ ଭାବନ୍ତି ଯେ ମନୁଷ୍ୟ
ଜାତି ଏକ ଛାଞ୍ଚ ସଙ୍ଗେ ସମାନ ନୁହେଁ । ଗଣତାନ୍ତ୍ରିକ ଏ କଥା
ମାନେ । କିନ୍ତୁ ଏପରି ଲୋକ ଅଛନ୍ତି ଆମ ପାଖରେ ଥିବାଙ୍କୁ
ଏତେ ଶୋଷି ପାରନ୍ତି । ସେମାନେ ଆମଠାରୁ ଅନେକ ଦୂରରେ
ଅଛନ୍ତି—ସେମାନେ ବି ପାଖକୁ ଆସିଗଲେ ତତ୍ପର ଶୋଷଣକାରୀ
ହୋଇ ଉଠିବେ । ଗଣତନ୍ତ୍ର ଗୁଣର ଅମର୍ଯ୍ୟାଦା କରେନାହିଁ । ବନ
ଜଙ୍ଗଲ ଭିତରେ ଆଜି ଯେଉଁ ଫୁଲଟି ତାର ଶୋଭା ବିତରଣ
କରିପାରୁ ନାହିଁ ଓ ଅତଳ ସମୁଦ୍ର ଗର୍ଭରେ ରହୁ ଯେଉଁ ମୁକ୍ତାଗୁଡ଼ା
ନିଜର ମୂଲ୍ୟ ପାଇପାରୁ ନାହିଁ, ଗଣତନ୍ତ୍ର ସେମାନଙ୍କର ଅବସ୍ଥାର
ବୁଝେ । ଏହା ସଙ୍ଗେ ଗଣତାନ୍ତ୍ରିକ ମଧ୍ୟ ବିଶ୍ୱାସ କରେ ଯେ ସମସ୍ତେ
ପ୍ରତିଭାଶାଳୀ ନ ହେଲେ ମଧ୍ୟ ସାଧାରଣ ଲୋକର ନିଜକଥା ବୁଝିବା

ପାଇଁ ପର୍ଯ୍ୟାପ୍ତ କ୍ଷମତା ଅଛି । ସୁବିଧା ଓ ସୁଯୋଗ ପାଇଲେ ସେ ନିଜକୁ ଶାସନ କରି ପାରିବ—ଅନ୍ୟ ସହିତ ସହଯୋଗ କରି ଏକ ସୁନ୍ଦର ସମାଜ ବି ଗଢ଼ି ପାରିବ । ଏକଛତ୍ରବାଦୀମାନେ କହନ୍ତି ଯେ ମନୁଷ୍ୟକୁ ବିଶ୍ୱାସ କରିବା ଉଚିତ ନୁହେଁ—ସେମାନଙ୍କୁ ଶାସନ କରିବା ଉଚିତ । କିନ୍ତୁ ଗଣତାନ୍ତ୍ରିକ ଆଶାବାଦୀ । ତେଣୁ ସେ ମନୁଷ୍ୟ ପ୍ରକୃତିକୁ ସନ୍ଦେହ କରେନାହିଁ, ମନୁଷ୍ୟ ଶକ୍ତିକୁ ଉପହାସ କରେ ନାହିଁ । ଲୋକମାନେ ନିଜ ବୁଦ୍ଧିରେ ନିଜ ସରକାର ବାଛି, ଦେଶର ଶାସନ କାର୍ଯ୍ୟ ପରିଚାଳନା କଲେ, ସମୂହ ମଙ୍ଗଳ ହେବ ବୋଲି ବିଶ୍ୱାସ କରେ ।

## ସ୍ୱାଧୀନତା

(୧) ତେଣୁ ନିଜ ଇଚ୍ଛାନୁସାରେ ନିଜ ସରକାର ବାଛିବା ଗଣତନ୍ତ୍ରର ପ୍ରଧାନ ଲକ୍ଷ୍ୟ । କିନ୍ତୁ ଏହି ଅଧିକାର ହାସଲ କରିବାକୁ ହେଲେ ଜନସାଧାରଣଙ୍କୁ ସ୍ୱାଧୀନତା ମିଳିବା ଦରକାର । ସ୍ୱାଧୀନ ଭାବରେ ଚିନ୍ତା କରିବା, ସ୍ୱାଧୀନ ଭାବରେ ନିଜର ମତ ପ୍ରକାଶ କରିବା, ସରକାରଙ୍କର ଦୋଷ ଓ ଦୁର୍ବଳତାକୁ ସମାଲୋଚନା କରିବା ପ୍ରଭୃତି ସୁବିଧା ଓ ସୁଯୋଗ ନାଗରିକମାନଙ୍କୁ ନ ମିଳିଲେ, ପ୍ରତିଷ୍ଠିତ ସରକାରର ପରିବର୍ତ୍ତନ ସମ୍ଭବ ନୁହେଁ । କାରଣ ଆଜିକାଲି ସରକାରମାନଙ୍କ ହାତରେ ଯେପରି ପ୍ରଚୁର ଯନ୍ତ୍ର ଅଛି, ସେମାନେ ଖୁବ ସହଜରେ ମିଛକୁ ସତ ଓ ସତକୁ ମିଛ କରିପାରିବେ । ସାଧାରଣ ଲୋକମାନଙ୍କୁ ନିଜ ପ୍ରଚାର ପ୍ରଣାଳୀ ଦ୍ୱାରା ଖୁବ୍ ସହଜରେ ନିଜ ହାତକୁ ଆଣି ପାରିବେ । ସେଥିପାଇଁ ବ୍ୟକ୍ତିଗତ ସ୍ୱାଧୀନତା ଓ ସମାଲୋଚନାର ଅଧିକାର ଆଜି ଖୁବ ଜରୁରୀ ହୋଇ ପଡ଼ିଛି । ବିଶେଷତଃ ଏକଛତ୍ର ଶାସନରେ ସରକାର ଖବର କାଗଜ, ସିନେମା

ରେଡ଼ିଓ ପ୍ରଭୃତି ଅସ୍ତ୍ରଅଛି ତାଙ୍କ ଏପରି ଭାବରେ ଯାହା ପ୍ରୋପାଗଣ୍ଡା କରୁଛନ୍ତି ଯେ ସାଧାରଣ ଲୋକ ସ୍ୱାଧୀନ ଭାବରେ ଚିନ୍ତା କରିବାର ବି ସୁବିଧା ପାଉନାହିଁ । ପ୍ରମାଣ କରିବାର ତ ସେଠି ଅଧିକାର ନାହିଁ । ଏକଚ୍ଛତ୍ର ଶାସନର ପ୍ରଚାର ଫଳରେ ଜଣଶାସିତମାନେ ମଧ୍ୟ ସେ ଦିଗରେ ଚିନ୍ତା କରିବାକୁ ଅକ୍ଷମ ହେଲେଣି । କିନ୍ତୁ ଯେଉଁଦିନ ସରକାରଙ୍କୁ ସମାଲୋଚନା କରିବାର ଅଧିକାର ମିଳିଯିବ, ସେ ଦିନ ଗଣତନ୍ତ୍ର ମଧ୍ୟ ଦେଖା ଦେଇପାରିବ । କାରଣ ସମାଲୋଚନାକୁ ବନ୍ଦ କରିବା ଅର୍ଥ ଜନ ସାଧାରଣଙ୍କର ସାର୍ବଭୌମ ଅଧିକାର କାଢ଼ି ନେବା ।

## ବିପକ୍ଷ ସମାଲୋଚନା ନା ସ୍ୱପକ୍ଷ ସମାଲୋଚନା

ସମାଲୋଚନା ଅର୍ଥ କେବଳ ସ୍ୱପକ୍ଷ ସମାଲୋଚନା ନୁହେଁ । ରୋଜା ଲକ୍ସେମ୍ବର୍ଗ (Rosa luxemburg) ଙ୍କ ଭାଷାରେ ବିପକ୍ଷୀମାନେ ଆମଠାରୁ ଅଲଗା ଭାବରେ ଚିନ୍ତା କରୁଛନ୍ତି, ସେମାନଙ୍କ ସ୍ୱାଧୀନତା ଦେବା ଅର୍ଥ ପ୍ରକୃତ ସ୍ୱାଧୀନତା । ଭଲ୍ଟାଏର୍ ଥରେ କହିଥିଲେ, "ତୁମେ ଯାହା କହୁଛ, ତାହା ସହିତ ମୁଁ ଆଦୌ ଏକମତ ନୁହେଁ । କିନ୍ତୁ ତୁମର ଏହା କହିବାର ଅଧିକାରକୁ ମୁଁ ପ୍ରାଣ ଦେଇ ରକ୍ଷା କରିବି ।" ତେଣୁ ଯେଉଁଥିରେ ଅନ୍ୟ ମତ ନାହିଁ, ସେହି ମତକୁ ମାନିବା, ସେହି ମତ ଉପରେ ପ୍ରମାଣ ହେବ, ସେଥିପାଇଁ ସମସ୍ତ ସୁବିଧା ଓ ସୁଯୋଗ ଦେବା ଗଣତନ୍ତ୍ରର ପ୍ରକୃତ ଉଦ୍ଦେଶ୍ୟ । କାରଣ ଅନ୍ୟ ମତ ଯେ ଠିକ ଓ ଅନ୍ୟ ମତଦ୍ୱାରା ଦେଶ ଚାଲିଲେ ସମସ୍ତଙ୍କର ଅଧିକାର ହେବ ଏକଥା ସ୍ୱୟଂ ଭଗବାନ୍ ବି କହିପାରିବେ ନାହିଁ । ମନୁଷ୍ୟର ତ ଭୁଲ ହେବାର କଥା । କିନ୍ତୁ ଏକଛତ୍ରବାଦୀମାନେ କେବଳ ସ୍ୱପକ୍ଷ ମତର ପୃଷ୍ଠପୋଷକତା କରନ୍ତି । ଯେ ପର୍ଯ୍ୟନ୍ତ

ଲୋକମାନେ ସେମାନଙ୍କ ପକ୍ଷରେ ଅଛନ୍ତି, ସେ ପର୍ଯ୍ୟନ୍ତ ସେମାନେ ନେତାମାନଙ୍କୁ ସମର୍ଥନ କରନ୍ତି । ଲେନିନଙ୍କ ବିରୁଦ୍ଧରେ ସମାଲୋଚନ-କାରୀ ମଧ୍ୟ ଏହି ଅଭିଯୋଗ ଥିଲା ।

## ଜାତୀୟ ଏକତା

ବିଭିନ୍ନ ବିରୋଧୀ ଦଳ ରହିବା ଗଣତନ୍ତ୍ରର ପ୍ରଧାନ ଲକ୍ଷଣ । ଗଣତନ୍ତ୍ରରେ ବିରୋଧୀ ଦଳର ନେତାଙ୍କୁ ସରକାରୀ ଦଳର ନେତାଙ୍କ ପରି ସମ୍ମାନ ମଧ୍ୟ ଦିଆଯାଏ । କିନ୍ତୁ ଏହି ବିରୋଧ ଯୋଗୁଁ ଅନେକେ ମନେ କରନ୍ତି ଯେ ଗଣତନ୍ତ୍ରରେ ଜାତୀୟ ଏକତା ସମ୍ଭବ ନୁହେଁ । ଏଠି ବିରୋଧୀ ଦଳ ମୁଣ୍ଡ ଟେକି ଉଠେ ଯେ ସେମାନେ ଜାତୀୟ ବିପଦ ସମୟରେ ମଧ୍ୟ ଏକାଠି ହୋଇ ପାରନ୍ତି ନାହିଁ । ରାଜନୀତିକ ଦଳମାନେ ଦେଶକୁ ଏପରି ଭାବରେ ବିଭକ୍ତ କରି ଦିଅନ୍ତି ଯେ ଦେଶର ଗୁରୁତର ସମସ୍ୟାବେଳେ ଆନ୍ଦୋଳନ ଚାଲିଥାଏ । ସରକାରକୁ ବହୁ ଦଳଙ୍କ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼େ । ଦେଶର ଉନ୍ନତି ଉପରେ ବାଧା ଆସେ । ସରକାର ମଧ୍ୟ କାର୍ଯ୍ୟ ସ୍ୱଚ୍ଛନ୍ଦରେ କରି ପାରନ୍ତି ନାହିଁ । ଲୋକଙ୍କର ସହଯୋଗ ପାଆନ୍ତି ନାହିଁ । ଏପରିକି ସ୍ଥାୟୀ ଭାବରେ ୪।୫ ବର୍ଷ କୌଣସି ସରକାର ମଧ୍ୟ କାମ କରିବାକୁ ସୁବିଧା ପାଏ ନାହିଁ ।

ଏସବୁ ଅଭିଯୋଗ ଗଣତନ୍ତ୍ର ଅନଭିଜ୍ଞ ଦେଶମାନଙ୍କ ପକ୍ଷରେ ସମ୍ଭବ । ସବୁଠାରେ ନୁହେଁ । ଅବଶ୍ୟ ଫ୍ରାନ୍ସରେ ଏକକାଳୀନ ୪।୫ ବର୍ଷ ପାଇଁ ସ୍ଥାୟୀ ସରକାର ଗଠିତ ହୋଇପାରୁ ନାହିଁ । ସେଥିପାଇଁ ଗଣତନ୍ତ୍ରକୁ ଦୋଷ ଦିଆଯାଇ ପାରିବ ନାହିଁ । ଫ୍ରାନ୍ସର ନିର୍ବାଚନରେ ରାଜନୈତିକ ଦଳମାନେ ଯେତିକି ଭୋଟ ପାଆନ୍ତି, ସେଇ ଅନୁପାତରେ ସେମାନଙ୍କୁ ବ୍ୟବସ୍ଥାପକ ସଭାରେ ସିଟ୍ ଦିଆଯାଏ ।

ତେଣୁ କୌଣସି ଦଳ ସର୍ବଶ୍ରେଷ୍ଠ ଦଳ ହୋଇ ପାରନ୍ତି ନାହିଁ ।
ଶାସନକୁ ସମାଲୋଚନା କରିବାକୁ ହେଲେ ଗୋଟିଏ ଦଳର
ସରକାର ଅନ୍ତତଃ ୪।୫ ବର୍ଷ ପାଇଁ ଶାସନଗାଦିରେ ରହିବା ଉଚିତ ।
ସେହି ଦୃଷ୍ଟିରୁ ପ୍ରାନ୍ତୀୟ ନିର୍ବାଚନ ପ୍ରଣାଳୀ ଆମକୁ ଭାରତରୁ
ବାଦ ଦେବାକୁ ହେବ ।

ଯେଉଁ ଯାହା ହେଉ, ଏ କଥା ମାନିବାକୁ ହେବ ଯେ,
ଭାରତର ଜାତୀୟ ଏକତା ବିରୋଧୀ ନୁହେଁ । ରାଜନୈତିକ ଦଳ-
ମାନଙ୍କ ଭିତରେ ମତଭେଦ ହୁଏ । କିନ୍ତୁ ସେମାନେ ଜାତିକୁ ଭାଗ
ଭାଗ କରନ୍ତି ନାହିଁ । ଭିନ୍ନ ଭିନ୍ନ ରାଜନୈତିକ ଦଳ ମଧ୍ୟରେ
ପାର୍ଲିଆମେଣ୍ଟରେ ଯେତେ ଯୁକ୍ତି ତର୍କ ଓ କଳି ତକରାର ହେଲେ
ମଧ୍ୟ ସେମାନେ ଯାହା ଦେଶର ହିତ, ତାକୁ ଭୁଲି ଯାଆନ୍ତି ନାହିଁ ।
ଆଲୋଚନା ଓ ସମାଲୋଚନାରୁ ପରସ୍ପରକୁ ବୁଝାଯାଏ । ଏହି
ବୁଝାବୁଝିରୁ ପରସ୍ପର ପ୍ରତି ସହୃଦୟତା ଜନ୍ମେ । ଏକଛତ୍ର
ଶାସନରେ ବିରୋଧର ସ୍ୱର ଶୁଣାଯାଏ ନାହିଁ ବୋଲି ଅନେକ ତାକୁ
ଜାତୀୟ ଏକତା କହନ୍ତି । କିନ୍ତୁ ତାହା ଜାତୀୟ ଏକତା ନୁହେଁ—
ଏକଛତ୍ରବାଦର ଶାନ୍ତାଧାର ( uniformity ) । ଯଦି ଏକତା ଥାନ୍ତା,
ତାହେଲେ ଶାସକମାନେ ବନ୍ଧୁକ ମୁନରେ ତାହାଙ୍କ ଶାସନ ଚଳାଉ
ଥାନ୍ତେ ? ହଜାର ହଜାର ଲୋକ ବିନା ବିଚାରରେ ତାହାଙ୍କ
ଜେଲ ଘରେ ଥାନ୍ତେ ବା କନସେଣ୍ଟ୍ରେସନ କ୍ୟାମ୍ପରେ ନରକ
ଯନ୍ତ୍ରଣା ପାଉଥାନ୍ତେ ? ଯେଉଁଠି ଏକତା ଅଛି, ସେଠି ବିରୋଧକୁ
ଦବାଇ ମୂଳଘାତ କରିବା ତାହାଙ୍କ ଦରକାର ପଡ଼ୁ ଥାନ୍ତା ?
କେବଳ ଶାସକଙ୍କୁ ଯେ ପୂଜା, ଅଭିନନ୍ଦନ ବା ସ୍ୱାଗତ ଦେଉଛନ୍ତି,
ତାଙ୍କୁ ଦେଖି ଜାତୀୟ ଏକତା ଅଛି ବୋଲି ବିଶ୍ୱାସ କରିବା ଉଚିତ
ନୁହେଁ । କାରଣ ସେ ଅଭିନନ୍ଦନକାରୀ କେବଳ ନିଜ ଦଳର ଲୋକ

ଆନ୍ତି । ୨୮।୨୫ କୋଟି ଲୋକଙ୍କ ଭିତରୁ ୧୦।୧୫ ହଜାର
ମଠାଧିକାରୀ ଦାଦାଗିରି ଏକଚ୍ଛତ୍ରଶାସକଙ୍କର ମୁଠା ବା
ଅନୁକମ୍ପାରେ ଉଦ୍ଧାର ସମ୍ଭବ ନାହିଁ । ଇଂରେଜଙ୍କ କୃପାରେ ଏକଛତ୍ର
ଶାସକମାନେ ଧନ ଦୌଲତରେ ବି ଦୁଇ ତିନି ଗୁଣ ଥାନ୍ତି—
ଯଥାସମ୍ଭବ ପର ନିଜର ସ୍ଥାନକୁ ଦେଖି ମଧ୍ୟ ଚମକି ଉଠନ୍ତି ।
କାରଣ ନିଜର ରାଜନୀତିକ ଉଦ୍ଦେଶ୍ୟ ହାସଲ କରିବା ପାଇଁ ଯେଉଁ
ବିରୋଧୀ ନେତାମାନଙ୍କୁ ସେମାନେ ହତ୍ୟା କରିଥାନ୍ତି, ସେମାନଙ୍କ
ଲୁଟ ନିଜ ସ୍ଥାନ ବିପଦରେ ବି ଦେଖା ଦିଏ ।

## ବିରୋଧ ଓ ବିଦ୍ରୋହ

ତେଣୁ ନାନାପ୍ରକାର ବିରୋଧ ବା ସମାଲୋଚନା ଥିଲେ ମଧ୍ୟ
ଗଣତନ୍ତ୍ର-ଶାସନରେ ପ୍ରକୃତ ଏକତା ପ୍ରକାଶ ପାଏ । କିନ୍ତୁ ବିରୋଧ
ବା ସମାଲୋଚନା ଅର୍ଥ ଅସ୍ତ୍ର, ଘଳତା ବା ଆଇନଭଙ୍ଗ ନୁହେଁ ।
ଗଣତାନ୍ତ୍ରିକ ଉପାୟରେ ବିରୋଧ କରିବାକୁ ହେବ—ଗଣତାନ୍ତ୍ରିକ
ଉପାୟରେ ସରକାର ବିରୁଦ୍ଧରେ ପ୍ରସ୍ତାବ ଆଣି ଶାସନ ଗାଦି ହାସଲ
କରିବାକୁ ହେବ । ସକ୍ରେଟିସ୍‌ଙ୍କର ଉଦାହରଣ ଆମ ଆଗରେ
ଜାଜ୍ୱଲ୍ୟମାନ ହୋଇ ରହିଛି । ସେ ସ୍ୱାଧୀନ ଚିନ୍ତାର ପକ୍ଷପାତୀ
ଥିଲେ କିନ୍ତୁ ବିଦ୍ରୋହର ବିରୋଧ କରିଥିଲେ । ଏହି ସ୍ୱାଧୀନ ଚିନ୍ତା
ପାଇଁ ଯେତେବେଳେ ତାଙ୍କୁ ପ୍ରାଣଦଣ୍ଡ ଦିଆଗଲା, ସେତେବେଳେ
ତାଙ୍କର ଅନେକ ବନ୍ଧୁ ତାଙ୍କୁ ଖସି ପଳାଇବା ପାଇଁ ପ୍ରବର୍ତ୍ତାଉ
ଥିଲେ । ହୁଏତ ସେ ଲୁଚି ପଳାଇ ବିଦ୍ରୋହ ସୃଷ୍ଟି କରି ପାରିଥାନ୍ତେ
କିନ୍ତୁ ଦେଶର ଆଇନକୁ ଅନୁରକ୍ତି ଦେଖାଇ ସେ ହସି ହସି ପ୍ରାଣ
ଦେଇଥିଲେ । ଆମେମାନେ ହୁଏତ ସକ୍ରେଟିସ୍‌ଙ୍କ ପରି ଆଦର୍ଶବାନ୍

ନ ହୋଇପାରନ୍ତି । କିନ୍ତୁ ଅନେକଙ୍କୁ ବଞ୍ଚି ଅଛନ୍ତି ଜରିଆରେ ଆନ୍ଦୋଳନ ବା ବିରୋଧ ନ କଲେ, ଗଣତନ୍ତ୍ର ରକ୍ଷା ହୋଇ ପାରିବ ନାହିଁ ।

## ଆର୍ଥିକ ସମତା

(ଗ) ଗଣତନ୍ତ୍ର ଅର୍ଥ କେବଳ ରାଜନୀତିକ ସମାନତା ନୁହେଁ—ଅର୍ଥନୀତିକ ସମାନତା ମଧ୍ୟ । ଜନସଂଘ ଇସ୍ତାହାରରେ ରାଜନୀତିକ ସ୍ୱାଧୀନତାକୁ ଜୋର ଦିଆଯାଇ ଥିବ । ସଂଘ ଇସ୍ତାହାରରେ ଅର୍ଥନୀତିକ ସମାନତା ପ୍ରତି ଲୋକଙ୍କର ବେଶୀ ନଜର ପଡ଼ନ୍ତୁ । ଅଗ୍ନ ଅନୁସାରେ ସମସ୍ତଙ୍କୁ ସମାନ ବଣ୍ଟନ ଦେଲେ ଗଣତନ୍ତ୍ର ପ୍ରତିଷ୍ଠା ହୋଇପାରିବ ନାହିଁ । ଯେତେବେଳେ ସ୍ପୋର୍ଟସ୍‌ରେ ୧୦୦ ଗଜ ରେସ୍ ହୁଏ, ସେତେବେଳେ ପ୍ରତିଯୋଗୀମାନେ ଏକା ସ୍ଥାନରୁ ଦୌଡ଼ ଆରମ୍ଭ କରନ୍ତି । ଯଦି କେହି ଦୌଡ଼ିବା ପାଇଁ ସମସ୍ତଙ୍କୁ ଆହ୍ୱାନ କରନ୍ତି କିନ୍ତୁ କେଉଁଠାରୁ ଆରମ୍ଭ ହେବ, ତାହା ନିରୂପଣ କରନ୍ତି ନାହିଁ, ତାହାହେଲେ ପ୍ରତିଯୋଗିତାର କିଛି ମୂଲ୍ୟ ରହେ ନାହିଁ । ସେହିପରି ଶାସନ କ୍ଷେତ୍ରରେ ସମସ୍ତଙ୍କୁ ସମାନ ଅଧିକାର ଦେବାକୁ ହେଲେ ଅର୍ଥନୈତିକ ସମତା ମଧ୍ୟ ରକ୍ଷା କରିବାକୁ ପଡ଼ିବ । ଯେ ପେଟରେ ମରୁଡ଼ି ଓଦା କନା ଦେଇ ଶୋଉଛନ୍ତି, ସେ ରାଜନୀତିକ ସ୍ୱାଧୀନତାରୁ କଣ ବୁଝିବ ? ପ୍ରତ୍ୟେକ ଲୋକ ଅବଶ୍ୟ ସମାନ ହୋଇ ଜନ୍ମ ହୋଇ ନାହିଁ । କିନ୍ତୁ ପ୍ରତ୍ୟେକ ଲୋକ ସ୍ୱାଧୀନ ହୋଇ ଜନ୍ମ ହୋଇଛନ୍ତି । ସମାଜରେ ତାର ସମାନ ଅଧିକାର ଅଛି । ତେଣୁ ସେ ସମାନ ସୁବିଧା ଓ ସୁଯୋଗ ପାଇବା ଉଚିତ । ଏଥିପାଇଁ ଅର୍ଥନୀତିକ ଗଣତନ୍ତ୍ରର ପ୍ରୟୋଜନ ।

ଅର୍ଥନୈତିକ ଗଣତନ୍ତ୍ର ଅନୁସାରେ ପ୍ରତ୍ୟେକ ବ୍ୟକ୍ତି ନିଜର ପରିବାର
ଚଳାଇବା ପାଇଁ ପର୍ଯ୍ୟାପ୍ତ ଅର୍ଥ ପାଇବା ଦରକାର । କେବଳ
ଦାର୍ଶନିକ ତତ୍ତ୍ୱ ବା ଶାସ୍ତ୍ର ଶିଖି ଗୋଟିଏ ଭୁଖପେଟରେ ଶୋଇବା
ପାଇଁ ବ୍ୟବସ୍ଥା କରିଦେଲେ ଗଣତନ୍ତ୍ର ଭାବ ଆସିପାରିବ ନାହିଁ ।
ପ୍ରତ୍ୟେକ ଲୋକ ନିଜର ଏକ ସୁଖୀ ଓ ସର୍ବାଙ୍ଗସୁନ୍ଦର ଜୀବନ
ଅତିବାହିତ କରିପାରିବ, ତାହା ହିଁ ଗଣତନ୍ତ୍ରର ଦେଖିବାର କଥା ।
ଦ୍ୱିତୀୟରେ ପ୍ରତ୍ୟେକ ଲୋକ ମଧ୍ୟ ସମାନ ସୁବିଧା ଓ ସୁଯୋଗ
ପାଇବା ଉଚିତ । କେତେକ ଏଥିପାଇଁ ଆର୍ଥିକ ସମତା ଆଣିବାକୁ
ମତ ଦେଉଛନ୍ତି । ଆର୍ଥିକ ସମତା ନ ଥାଇ ମଧ୍ୟ ସମାନ ସୁବିଧା ଓ
ସୁଯୋଗ ଦେବାରେ ବେଶୀ କିଛି ଅସୁବିଧା ହେବ ନାହିଁ ବୋଲି
ଅନ୍ୟ କେତେକଙ୍କର ମତ । ଯେ ଯାହା କୁହନ୍ତୁ, ଏକଥା ସତ ଯେ,
ସମାଜରେ ଯଦି ଅର୍ଥନୈତିକ ତାରତମ୍ୟ ପ୍ରବଳ ଭାବରେ ଦେଖା-
ଯାଏ, ତାହେଲେ ଯଥାର୍ଥ ଗଣତନ୍ତ୍ର ସମ୍ଭବ ହୋଇ ପାରିବ
ନାହିଁ । ସମସ୍ତଙ୍କର ଆୟ ସମାନ ନ ହେଲେ ମଧ୍ୟ, ଆଜି ଯେପରି
ଆୟରେ ଆକାଶ ପାତାଳ ପ୍ରଭେଦ ଅଛି, ସେଥିରେ ପରସ୍ପର ସହୃଦ
ସହଯୋଗ ମଧ୍ୟ ସମ୍ଭବ ହୁଏନି । ଗଣତନ୍ତ୍ର ସହଯୋଗ ଓ ସଦ୍‌ଭାବ
ଉପରେ ପ୍ରତିଷ୍ଠିତ । ଅପୋଷରେ ମିଳାମିଶା କରିବା ଗଣତନ୍ତ୍ରର
ପ୍ରଧାନ ଲକ୍ଷ୍ୟ । ଏହି ଅପୋଷ ମିଳାମିଶା ପାଇଁ ସମାଜରୁ ବଡ଼ଛୋଟ
ଦୂର କରି ସମତା ଆଣିବାକୁ ପଣ୍ଡିତ ନେହେରୁ ଚେଷ୍ଟା କରିଥିଲେ
ଭୂମିସ୍ୱତ୍ୱରେ ଶିଳ୍ପ ଓ ବ୍ୟବସାୟ କ୍ଷେତ୍ରରେ ଶ୍ରମିକମାନଙ୍କର ମଧ୍ୟ
କିଛି କର୍ତ୍ତୃତ୍ୱ ରହିବା ଆବଶ୍ୟକ । ଯେପରି ରାଜନୀତିକ କ୍ଷେତ୍ରରେ
ସ୍ୱେଚ୍ଛାଚାରୀ କ୍ଷମତା ପରିହାର୍ଯ୍ୟ, ସେହିପରି ଅର୍ଥନୀତି କ୍ଷେତ୍ରରେ
ଅନିୟନ୍ତ୍ରିତ କ୍ଷମତା ମଧ୍ୟ ପରିହାର୍ଯ୍ୟ । ରାଜନୀତି ଓ ଅର୍ଥନୀତି
କ୍ଷେତ୍ରରେ ସ୍ୱାୟତ୍ତଶାସନ ଗଣତନ୍ତ୍ରର ପ୍ରଧାନ ଉଦ୍ଦେଶ୍ୟ ।

## ଅନାକ୍ରମଣ ଚୁକ୍ତି

(୪) ଏପର୍ଯ୍ୟନ୍ତ ଆମେ ଗଣତନ୍ତ୍ରର ଅର୍ଥ ବା ସ୍ୱରୂପ ଆଲୋଚନା କରିଅଛୁ । କିନ୍ତୁ ଗଣତନ୍ତ୍ର ଶାସନ ଯେତେ ଭଲ ହେଲେ ମଧ୍ୟ ସାମାଜିକ ଅବସ୍ଥା ଅନୁକୂଳ ନ ହେଲେ ଗଣତନ୍ତ୍ର ତିଷ୍ଠି ପାରିବ ନାହିଁ । ଶାସନ ସମାଜ ଉପରେ ନିର୍ଭର କରେ । ସମାଜ ଲୋକ ଚରିତ୍ର ଉପରେ ନିର୍ଭର କରେ । ଯେଉଁ ଦେଶର ଲୋକ ଯେପରି, ସେ ଦେଶର ଶାସନ ସେହିପରି । ଗଣତନ୍ତ୍ରର ସ୍ଥାୟିତ୍ୱ ପାଇଁ ଏକ ଉଚ୍ଚ୍ୱାସ ଦରକାର—ଏକ ସହନଶୀଳ ମନୋ-ଭାବ ଦରକାର । ଯେଉଁ ରାଜନୀତିକ ଦଳମାନେ କ୍ଷମତା ପାଇଁ ପ୍ରତିଯୋଗିତା କରୁଛନ୍ତି, ସେମାନଙ୍କ ଭିତରେ ବିଶ୍ୱାସ ରହିବା ଦରକାର । ଗୋଟିଏ ଦଳ କ୍ଷମତାକୁ ଆସିଲେ ଅନ୍ୟଦଳକୁ ଉତ୍ପୀଡ଼ନ କରିବାର ଯଦି ସମ୍ଭାବନା ରହେ, ତାହେଲେ ଗଣତନ୍ତ୍ର ସଫଳ ହେବାର କୌଣସି ସମ୍ଭାବନା ନାହିଁ । କାରଣ ବୈଧାନିକ ଉପାୟରେ ଓ ଶାନ୍ତିପୂର୍ଣ୍ଣ ଭାବରେ ଶାସନର ପରିବର୍ତ୍ତନ ଗଣତନ୍ତ୍ରର ଲକ୍ଷ୍ୟ । ଯେଉଁ ଦଳ ଆଜି କ୍ଷମତାରେ ଅଛନ୍ତି, ସେମାନଙ୍କର ଯଦି ବିଶ୍ୱାସ ହୁଏ ଯେ ବିରୋଧୀ ଦଳ କ୍ଷମତାକୁ ଆସିଲେ ସେମାନଙ୍କର ମୂଳୋତ୍ପାଟନ କରିବେ, ତାହେଲେ ସେମାନେ କ୍ଷମତାକୁ ଜାବୁଡ଼ି ଧରିବାକୁ ଚେଷ୍ଟା କରିବେ । ଯଦି ବିରୋଧୀ ଦଳର ବିଶ୍ୱାସ ହୁଏ ଯେ, ଯେଉଁମାନେ କ୍ଷମତାରେ ଅଛନ୍ତି ସେମାନେ ଯେ କୌଣସି ଉପାୟରେ କ୍ଷମତାରେ ରହିବାକୁ ଚାହାନ୍ତି, ତାହେଲେ ସେମାନେ ଅରାଜକ ଆନ୍ଦୋଳନ କରିବେ । ଅତଏବ ଗଣତନ୍ତ୍ରରେ ଭିନ୍ନ ଭିନ୍ନ ରାଜନୀତିକ ଦଳ ମଧ୍ୟରେ ଏକ ଅନାକ୍ରମଣ ଚୁକ୍ତି ହେବା ଆବଶ୍ୟକ । ରାଜନୀତି କ୍ଷେତ୍ରରେ ଯେତେ ମତଭେଦ ଥାଉ ପଛେ

କୌଣସି ଦଳ ଅନ୍ୟ ଦଳକୁ ଉତ୍ପୀଡ଼ନ କରିବେ ନାହିଁ—ବୈଧାନିକ ଉପାୟରେ କ୍ଷମତା ହାସଲ କରିବାକୁ ଚେଷ୍ଟା କରିବେ ।

## ଆଇନ ଅମାନ୍ୟ ଦଣ୍ଡ

ଏଠି ଏ କଥା ମଧ୍ୟ କୁହାଯାଇ ପାରେ ଯେ, ଯେଉଁ ଦଳ ଗଣତନ୍ତ୍ରରେ ବିଶ୍ୱାସ କରେ ନାହିଁ, ସେ ଦଳକୁ ଗଣତନ୍ତ୍ର ଶାସନର ସୁବିଧା ଓ ସୁଯୋଗ ଦେବା ଉଚିତ ନୁହେଁ । ସ୍ୱାଧୀନ ଭାବରେ ମତ ବ୍ୟକ୍ତ କରିବା ବା ସରକାରଙ୍କୁ ସମାଲୋଚନା କରିବାର ଅଧିକାର ପାଇବା ଗଣତନ୍ତ୍ରର ପରିଚୟ । କିନ୍ତୁ ନିର୍ବାଚନ ପ୍ରଣାଳୀ ଦ୍ୱାରା ଶାସନ ଗଢ଼ିବା ଓ ଆଲୋଚନା ଦ୍ୱାରା ଶାସନ ପରିଚାଳନା କରିବା ଗଣତନ୍ତ୍ର-ଶାସନର ପ୍ରଣାଳୀ । ସେହିପରି ବିରୋଧୀ ଦଳକୁ ଉତ୍ପୀଡ଼ନ ନ କରିବା ଗଣତନ୍ତ୍ରର ଭିତ୍ତି । ଯେଉଁମାନେ ଗଣତନ୍ତ୍ର ପ୍ରଣାଳୀ ବା ଭିତ୍ତି ଉପରେ ବିଶ୍ୱାସ କରନ୍ତି ନାହିଁ, ସେମାନେ ଗଣତନ୍ତ୍ର ଶାସନର ସୁବିଧା ଓ ସୁଯୋଗ ପାଇବା ଉଚିତ ନୁହେଁ । ତେଣୁ ଗଣତନ୍ତ୍ରର ରକ୍ଷା ପାଇଁ ଦରକାର ପଡ଼ିଲେ ସେମାନଙ୍କ ଗଣଘାତକ ଦଳକୁ ଦମନ କରିବା ପାଇଁ ଡର୍ବିନ ( Politics of Democratic Socialism ) ଯେଉଁ ମତ ଦେଇଛନ୍ତି, ତାହା ସଙ୍ଗତ ଅଟେ ଏକ ମତ । ଯେଉଁମାନେ ଖେଳର ନିୟମ ମାନିବେ, ସେମାନେ ସିନା ଖେଳିବେ । ସେହିପରି ଯେଉଁମାନେ ଗଣତନ୍ତ୍ର ଶାସନର ସହନଶୀଳତା ଓ ଆପୋଷ ମିଳାମିଶା ନିୟମ ମାନିବେ, ସେମାନେ ଗଣତନ୍ତ୍ରର ସୁବିଧା ଓ ସୁଯୋଗ ଉଠାଇବେ । ଅନ୍ୟମାନେ ନୁହନ୍ତି ।

---

## ଗଣତନ୍ତ୍ର-ଶାସନର ସଫଳତା

ଆମେ ଏ ପର୍ଯ୍ୟନ୍ତ ଗଣତନ୍ତ୍ର-ଶାସନର ଅର୍ଥ ଓ ସ୍ୱରୂପ ସମ୍ବନ୍ଧ-ଚର୍ଚ୍ଚା କରିଲେ । ଏହି ଆଲୋଚନାରୁ ଅନ୍ତତଃ ଏତିକି ଅନୁମିତ ହେଉଅଛି ଯେ ଗଣତନ୍ତ୍ର ଶାସନ ଖାଲି ଅଭିନ ଶାସନ ନୁହେଁ । ଅଭିନ ଉପାୟରେ ଶାନ୍ତିପୂର୍ଣ୍ଣ ଭାବରେ ନିଜର ସମସ୍ୟାର ସମାଧାନ କରିବା, ଅନ୍ୟ ସହିତ ବିବାଦ ତୁଟାଇବା ଗଣତନ୍ତ୍ରର ପ୍ରଧାନ ଉଦ୍ଦେଶ୍ୟ । ଏଥିପାଇଁ ଖାଲି ଶିକ୍ଷା ହେଲେ ହେବ ନାହିଁ, କେବଳ ବୁଦ୍ଧି ଓ ଜ୍ଞାନ ନେଇ ଗଣତନ୍ତ୍ରକୁ ରକ୍ଷା କରାଯାଇ ପାରିବ ନାହିଁ । ଗଣତନ୍ତ୍ର ପାଇଁ ଏକ ଅଲଗା ପ୍ରକାର ସ୍ୱଭାବ ଦରକାର—ଯାହାକୁ କି ଆମେ ସହନଶୀଳ ମନୋଭାବ ବୋଲି କହୁଁ । ଅନେକ ଶିକ୍ଷିତ, ବୁଦ୍ଧିମାନ ଓ ପଣ୍ଡିତ ଲୋକ ମଧ୍ୟ ଅଳ୍ପ କଥାରେ ଉତ୍ତେଜିତ ହୋଇ ପଡ଼ନ୍ତି । ସୁସ୍ଥ ତର୍କ କରି ନିଜର ମତକୁ ପ୍ରତିଷ୍ଠା କରିବା ପାଇଁ ଧୈର୍ଯ୍ୟ ରଖି ପାରନ୍ତି ନାହିଁ । ବିରୋଧୀକୁ ମୂର୍ଖତା ବୋଲି ଆଖ୍ୟା ଦିଅନ୍ତି । ସେମାନଙ୍କ ଭିତରେ ଏତେ ଅହଂ ଭାବ ପୂରି ରହିଥାଏ ଯେ ଅନ୍ୟ ଉକ୍ତିରେ କିଛି ସତ୍ୟତା ଅଛି ବୋଲି ସ୍ୱୀକାର କରିପାରନ୍ତି ନାହିଁ । ତେଣୁ ଏହି ସହନଶୀଳତା ଏବଂ ଅପୋଷ ମିଳାମିଶା ପାଇଁ ଏକ ମାନସିକ ଉତ୍କର୍ଷ ଦରକାର । ପ୍ରତ୍ୟେକ ଲୋକ ନିଜ ମନଇଚ୍ଛା କରିବାର ବା ସମାଜ ପାଇବା ସମ୍ଭବ ନୁହେଁ । ସମାଜରେ ଦ୍ୱନ୍ଦ୍ୱ ଅଛି—ବୈଷମ୍ୟ ବି ଅଛି । କିନ୍ତୁ ଏହି ବୈଷମ୍ୟ ବା ଦ୍ୱନ୍ଦ୍ୱର କିପରି ନାସ୍ତି ହୁଏ, ତା ଉପରେ ସମାଜ ଓ ଶାସନ ନିର୍ଭର କରେ । ଦ୍ୱନ୍ଦ୍ୱ ଓ ବୈଷମ୍ୟକୁ ସମାଧାନ କରିବା ପାଇଁ ଯଦି ହିଂସାର ପନ୍ଥା ଅବଲମ୍ବନ କରାଯାଏ, ତାହାହେଲେ ସେଥିରେ

ଉତ୍ତେଜନାର ସ୍ଥାନ ନାହିଁ । ସଂଗଠନ ଅନ୍ୟର ମତକୁ ସମ୍ମାନ ଦେଖାଏ । ଅନ୍ୟ ସହିତ ଆଲୋଚନା କରି ତାହାର ନିଷ୍ପତ୍ତି କରେ । ନିର୍ବାଚନରେ ବା ଦର୍ପର ଭାବ ନାହିଁ ; ସ୍ୱାର୍ଥର ଦମ୍ଭ ନାହିଁ । ଏ ସବୁ ଏକ ରକମ ସ୍ୱଭାବର କଥା । ଯା ମନରେ ଉତ୍ତେଜନା ନ ଥିବ, ଯା ହୃଦୟରେ ଅନ୍ୟ ପ୍ରତି ସ୍ନେହ ଓ ସହାନୁଭୂତି ଥିବ, ସେ କେବଳ ଅନ୍ତଃପ୍ରାଣ ମିଳାମିଶାରେ ଦ୍ୱନ୍ଦ୍ୱକୁ ନିଷ୍ପତ୍ତି କରିବାକୁ ଚେଷ୍ଟା କରିବ । ତେଣୁ ଏଥିପାଇଁ ହୃଦୟର ଗୁଣ ଦରକାର—କେବଳ ମାନସିକ ଶିକ୍ଷାରେ ଚଳିବ ନାହିଁ ।

କିନ୍ତୁ ଦୁଃଖର କଥା ଯେ ଆଧୁନିକ ଯୁଗରେ ଗୁଣ୍ଡାମିରେ ଉତ୍ତେଜନା ବଢ଼ି ଚାଲିଛି । ଏପରିକି ଯେଉଁମାନେ ଶାନ୍ତି ନାମରେ ସଂଗଠନ କରୁଛନ୍ତି, ସେମାନେ ବେଶୀ ଉତ୍ତେଜନା ସୃଷ୍ଟି କରୁଛନ୍ତି ଶାନ୍ତି ନାମରେ ସଂଘର୍ଷ ପ୍ରସ୍ତୁତ ହୋଇଛି । ଆଜିକାଲି ସମାଜରେ କୌଣସି ସ୍ଥିରତା ନାହିଁ । ଉନବିଂଶ ଶତାବ୍ଦୀରେ ସମାଜରେ ଅନ୍ତତଃ ଏକ ରକମ ସ୍ଥିରତା ଥିଲା । ମନରେ ଶାନ୍ତି ଥିଲା । ଏବେ ଗୁଣ୍ଡାମିରେ ଦ୍ୱନ୍ଦ୍ୱ ବଢ଼ିଛି । ସମାଜ ଓ ମନର ଦ୍ୱନ୍ଦ୍ୱ ଉତ୍ତେଜନା ସୃଷ୍ଟି କରୁଛି । ଯାହା ଫଳରେ କି ସଂଗଠନ ଅଗ୍ରସର ପାରୁ ନାହିଁ । ସହନଶୀଳ ମନୋଭାବ ସହଜ ସାଧ୍ୟ ନୁହେଁ । ଇତିହାସରେ ଅନେକ ସନ୍ତବେଳେ ଧର୍ମର ନିର୍ଯ୍ୟାତନା ଦେଖି ଆସିଛେ । କିନ୍ତୁ ସେଥିପାଇଁ ଲୋକେ ଦୁଃଖ କରୁଥିଲେ । ଐତିହାସିକମାନେ ଭୁଲ ହୋଇଛି ବୋଲି ମାନୁଥିଲେ । କିନ୍ତୁ ଆଜି ଏହି ନିର୍ଯ୍ୟାତନାକୁ ନୀତି ଦୃଷ୍ଟିରୁ ବି ସମର୍ଥନ କରାଯାଉଛି । ଅନେକ ବାଦ ନାଁରେ ଉତ୍ତେଜନା ସୃଷ୍ଟି କରାଯାଉଛି । ଏପରି ଅବସ୍ଥାରେ ସଂଗଠନ ସଫଳ ହେବ କିପରି ? ମନର ଉତ୍ତେଜନାକୁ ନିୟନ୍ତ୍ରଣ କରି ଅନ୍ୟର ଦାବି ଓ ଅଧିକାରକୁ ସମ୍ମାନ ନ ଦେଖାଇଲେ ସଂଗଠନ ସଫଳ

ହୋଇ ପାରିବ ନାହିଁ । ଏ ଦିଗରେ ଆମେ ଯେ ଅନେକ ପଛରେ ପଡ଼ିଛେ, ଏଥିରେ କୌଣସି ସନ୍ଦେହ ନାହିଁ । କେବଳ ଆମେ ନାହିଁକି, ସମୁଦାୟ ପୃଥିବୀରେ ଏହି ଉତ୍ତେଜନା ଯୋଗୁଁ ଗଣତନ୍ତ୍ର ଅଳ୍ପ ପଛରେ ପଡ଼ନ୍ତି । ଯେଉଁମାନଙ୍କର ବଳ ଅଛି, ସେମାନେ ଉତ୍ତେଜନା ସୃଷ୍ଟି କରି ସମୁଦାୟ ମୁଲକକୁ ଦଖଲ କରିବାକୁ ଚେଷ୍ଟା କରୁଛନ୍ତି । ତେଣୁ ଗଣତନ୍ତ୍ରର ବିକାଶ ହୋଇ ପାରୁନାହିଁ ।

ଯେଉଁମାନଙ୍କର ବଳ ଅଛି, ସେମାନେ ଯେ ଗଣତନ୍ତ୍ରକୁ ଚାଲେଞ୍ଜ କରୁଛନ୍ତି ତା ନୁହେଁ, ଯେଉଁମାନେ ଦୁର୍ବଳ ସେମାନେ ମଧ୍ୟ ଗଣତନ୍ତ୍ରର ଶତ୍ରୁ ହୋଇ ପଡ଼ିଛନ୍ତି । ବଳବାଲା ଲୋକ ଜବରଦସ୍ତି ଶାସନ କଳକୁ ଦଖଲ କରି ନିଜର ମତବାଦକୁ କାର୍ଯ୍ୟକାରୀ କରିବାକୁ ଚାହାନ୍ତି । ଦୁର୍ବଳବାଲା ନୀରବରେ ତାକୁ ସହି ନିଅନ୍ତି । ବଳଶାଳୀମାନେ ଗଣତନ୍ତ୍ର-ଶାସନକୁ ଘୃଣା କରନ୍ତି । ଦୁର୍ବଳମାନେ ଏହାକୁ ଭୟ କରନ୍ତି । ଏମାନଙ୍କର ଉଦାସୀନତା ଯୋଗୁଁ ଗଣତନ୍ତ୍ର-ଶାସନ କାର୍ଯ୍ୟକାରୀ ହୋଇପାରେ ନାହିଁ । ଗଣତନ୍ତ୍ର-ଜନସାଧାରଣଙ୍କର ଶାସନ । ତେଣୁ ଏମାନେ ଶାସନରେ ସକ୍ରିୟ ଭାଗ ନେବା ଉଚିତ । ସ୍ୱାୟତ୍ତ ଶାସନର ଦାୟିତ୍ୱ ଗ୍ରହଣ କରିବା ଉଚିତ । କିନ୍ତୁ ଅଧିକାଂଶ ଏଥିପାଇଁ ପ୍ରସ୍ତୁତ ନୁହଁନ୍ତି । ସାବାଳକ ଭୋଟ ପ୍ରଥା ପ୍ରଚଳନ ହେଲେ ମଧ୍ୟ ଶତକଡ଼ା ୪୦।୫୦ ଲୋକ ଭୋଟ ଦେବାକୁ ଆସନ୍ତି । ସରକାରର ଦୋଷ ଦୁର୍ବଳତା ହେଲେ ମଧ୍ୟ, ତାକୁ ଅନେକ ଲୋକ ମୁଣ୍ଡପାତି ମାନି ନିଅନ୍ତି । ଯେଉଁମାନେ ଅବା ସମାଲୋଚନା କରନ୍ତି, ସେମାନେ ମଧ୍ୟ ଦାୟିତ୍ୱ ବହନ କରିବାକୁ ପ୍ରସ୍ତୁତ ନୁହଁନ୍ତି । ତେଣୁ ଶାସନ କେତେକ ମୁଷ୍ଟିମେୟ ରାଜନୀତିଜ୍ଞଙ୍କ ଦ୍ୱାରା ପରିଚାଳିତ ହୁଏ । ଗଣତନ୍ତ୍ରର ମୂଳ ଲକ୍ଷ୍ୟ ହାସଲ ହୋଇପାରିବ ନାହିଁ । ଜନ-ସ୍ୱାର୍ଥ ମିଳି ଗଣତନ୍ତ୍ରର

ସଫଳତା ପାଇଁ ୧୦୦ବର୍ଷ ତଳେ ଟକେଭାଇ ସର୍ତ୍ତ ରଖିଯାଇଥିଲେ । ଏବେ ମଧ୍ୟ ସେ ସବୁ ସର୍ତ୍ତର ଅବଶ୍ୟକତା ଅଛି । ପ୍ରଥମତଃ ଦେଶର ଲୋକେ ଗଣତନ୍ତ୍ର-ଶାସନ ପାଇଁ ଇଚ୍ଛା ପ୍ରକାଶ କରିବେ । ସେମାନଙ୍କର ଏଥିରେ ସଦିଚ୍ଛା ନ ଥିଲେ, ଗଣତନ୍ତ୍ର-ଶାସନ ପାଇଁ ହାର୍ଦ୍ଦିକ ସହଯୋଗ ମିଳିବ ନାହିଁ । ଖାଲି ଇଚ୍ଛା ଥିଲେ ହେବ ନାହିଁ—ଗଣତନ୍ତ୍ରଶାସନ ପରିଚାଳନା ପାଇଁ ଶକ୍ତି ଥିବା ଦରକାର । ଖାଲି ଇଚ୍ଛାରେ ଯଦି ସବୁ କାମ ସଫଳ ହୋଇଯାଉଥାନ୍ତା ତାହେଲେ ଭିକାରୀମାନେ ବି ଘୋଡ଼ା ଚଢ଼ି ବୁଲୁଥାନ୍ତେ । ଦ୍ୱିତୀୟରେ ନିଜର ସ୍ୱାଧୀନତା ରକ୍ଷା କରିବା ପାଇଁ ଲୋକମାନେ ସମସ୍ତ ପ୍ରକାର ସତର୍କତା ଅବଲମ୍ବନ କରିବା ଉଚିତ । ନିଜର ଉଦାସୀନତା ବା ଅସାବଧାନତା ଯୋଗୁଁ ଅନେକ ସମୟରେ ଏମାନଙ୍କ ସ୍ୱାଧୀନତା ଅପହରଣ ହୋଇ ପାରନ୍ତି । ଇଟାଲି ଓ ଜର୍ମାନୀରେ ଯେଉଁ ଏକଛତ୍ରଶାସନ ପ୍ରତିଷ୍ଠିତ ହେଲା, ସେଥିରେ ସେଠା ଲୋକଙ୍କର ଔଦାସିନ୍ୟ ବି କମ୍ ଦାୟୀ ନୁହେଁ । ତେଣୁ ଯେଉଁମାନେ ଗଣତନ୍ତ୍ର ବା ସ୍ୱାଧୀନତାକୁ ଅବମର୍ଷ କରିବେ, ସେମାନଙ୍କୁ ପ୍ରତିରୋଧ କରିବାକୁ ପଡ଼ିବ । ତାହେଲେ ଯାଇଁ ଗଣତନ୍ତ୍ର ଶାସନ ଚାଲୁ ରହି ପାରିବ । ତୃତୀୟରେ ଲୋକମାନେ ସେମାନଙ୍କର ନାଗରିକ ଦାୟିତ୍ୱ ଠିକ୍ ଭାବରେ ବହନ କରିବେ । ଭୋଟବେଳେ ନ୍ୟାୟସଙ୍ଗତରେ ଭୋଟ ଦେବେ । ଦରକାର ପଡ଼ିଲେ ନିଜ ମୁଣ୍ଡରେ ଦାୟିତ୍ୱ ନେଇ ସମସ୍ୟାର ସମାଧାନ କରିବାକୁ ପ୍ରସ୍ତୁତ ହେବେ । ନିଜ ଜାତି ଓ ଭାରତର ପ୍ରତି ସେମାନଙ୍କର ଯେଉଁ କର୍ତ୍ତବ୍ୟ ଅଛି ସେ କର୍ତ୍ତବ୍ୟରେ ଯଦି ଖିଲାପ ହୁଏ, ତା ହେଲେ ଗଣତନ୍ତ୍ରଶାସନ ସଫଳ ହୋଇ ପାରିବ ନାହିଁ । ଗଣତନ୍ତ୍ର-ଶାସନ ଏକ କଷ୍ଟସାଧ୍ୟ ଶାସନ । ଏକଛତ୍ର-ଶାସନରେ ନିଜକୁ କଷ୍ଟ କରିବାକୁ ପଡ଼େ ନାହିଁ । ସରକାର

ସବୁକଥା ଠିକ୍ କରନ୍ତି । କେବଳ ତାଙ୍କର ହୁକୁମ ପାଳିବାକୁ ପଡ଼େ । କିନ୍ତୁ ଗଣତନ୍ତ୍ର ଶାସନରେ ନିଜେ ଦାୟିତ୍ୱ ନେଇ ଭଲ ମନ୍ଦ ଠିକ କରି ସେଇ ଅନୁସାରେ କାର୍ଯ୍ୟ କରିବାକୁ ପଡ଼େ । ତେଣୁ ସେଥିପାଇଁ ଯଦି ଲୋକମାନେ ପ୍ରସ୍ତୁତ ନଥାନ୍ତି, ଗଣତନ୍ତ୍ର ସଫଳ ହୋଇ ପାରେ ନାହିଁ । ଦୁଃଖର କଥା ଯେ ଅଜ୍ଞ ଗୁଣ ଅଛେ ଉଦାସୀନତା ବ୍ୟାପି ଯାଉଛି । ତେଣୁ ଗଣତନ୍ତ୍ର ଅଗେଇ ପାରୁନାହିଁ ।

ଏ ତ ଗଲା ଲୋକ ସାଧାରଣଙ୍କର ଦୋଷ । କିନ୍ତୁ ଗଣତନ୍ତ୍ରର ମଧ୍ୟ ଏକ ମୌଳିକ ଦୋଷ ଅଛି । ଗଣତନ୍ତ୍ର ଆଧୁନିକ ଯୁଗର ଦାବୀ ପୂରଣ କରିପାରୁନାହିଁ । ଆଧୁନିକ ଯୁଗ ବେଗ ଯୁଗ । ମନୁଷ୍ୟ ବେଗ ଖୋଜୁଛି । କାରଣ ଅଳ୍ପ ସମୟରେ ବେଶି ବାଟ ଯିବ, ଅଳ୍ପ ପରିଶ୍ରମରେ ବେଶୀ କାମ ହାସଲ କରିବ, ଅଳ୍ପ ଚେଷ୍ଟାରେ ବେଶୀ କଥା ଜାଣିବ । କିନ୍ତୁ ଏଇ ବେଗ ଯୁଗରେ ଗଣତନ୍ତ୍ର ବଳଦ ଗାଡ଼ି ପରି ଧୀର ମନ୍ଥର ଗତିରେ ଚାଲିଛି । ଗଣତନ୍ତ୍ର-ଶାସନରେ ଫାଇଲ ଚାପ ବସ୍ତା ବସ୍ତା ଲେଢ଼ା ଗୁଡ଼ା କଚେରୀକୁ ଟେବୁଲକୁ ଯାଉଛି । ଦରଖାସ୍ତ ସବୁ ଦପ୍ତର ଗୃହାଳରେ ଯିବ, ପ୍ରତ୍ୟେକ କର୍ମଚାରୀ ତାଙ୍କର ସୁଚିନ୍ତିତ ମନ୍ତବ୍ୟ ଦେବେ ଓ ତାପରେ ଯାଇଁ ସମସ୍ୟାର ଏକ ସମାଧାନ ହେବ । ଏହା ଫଳରେ ଶାସନ କାର୍ଯ୍ୟ ଶେଷରେ ଯାଇଁ କର୍ମଚାରୀଙ୍କ ଉପରେ ପଡ଼ିଯାଉଛି । ସେମାନେ ବି କାର୍ଯ୍ୟବ୍ୟସ୍ତ ବାହାନା ଦେଖାଇ ଗୋଟିଏ ଗୋଟିଏ ଫାଇଲକୁ ବର୍ଷେ ବର୍ଷେ ଚାପି ରଖି ଦେଉଛନ୍ତି । ଅନେକ ସମୟରେ ଏପରି ଅମୂଳ କମାଳର ମନ୍ତବ୍ୟ ଦେଉଛନ୍ତି ଯେ ଶାସନର ସମର୍ଥକମାନେ ମଧ୍ୟ ଶାସନ ଯନ୍ତ୍ରର ବିରକ୍ତ ହୋଇ ଉଠୁଛନ୍ତି । ଫାଇଲ ଗୋଟିଏ ଟେବୁଲରୁ ଅନ୍ୟ ଟେବୁଲକୁ ଯିବା ବୁଲୁଛି । ଅତି ସାଧାରଣ କଥାର ମୀମାଂସା ପାଇଁ

୪-୫ ବର୍ଷ ବଞ୍ଚିପାରୁଛି । ଏଥିରେ ଗଣତନ୍ତ୍ର-ଶାସନ ପାଇଁ ଆଦର କହିବ କିପରି ? ଯେଉଁ ଦେଶରେ ପାର୍ଲାମେଣ୍ଟ ବେଶ ଅଛି, ସେଠି ମଧ୍ୟ ଗଣତନ୍ତ୍ର ଏକଛତ୍ର ଶାସନ ପରି ଉପଦ୍ରବ ଘଟନା ସୃଷ୍ଟି କରି ପାରୁନାହିଁ । ଇଂଲଣ୍ଡ କଥା ଦେଖାଯାଉ । ସେଠି ଗଣତନ୍ତ୍ର-ଶାସନ ଅଛି । କିନ୍ତୁ ସଂଗଠିତ ଜନମତ ଓ ଶହ ଶହ ବର୍ଷର ଅଭିଜ୍ଞତା ସେଠାଁ ଶାସନ ଭାର ପାର୍ଲାମେଣ୍ଟ ଅଟ୍ଟ ଧାରନ୍ତି । ୧୯୫୪ ମସିହା ରେ । ଇଂଲଣ୍ଡର କୃଷି ବିଭାଗ ୩୦୦ । ୪୦୦ ଏକର ଜମିର ଏକ ନକ୍ସା କରିବାରେ ୨-୩ ବର୍ଷ ବିଳମ୍ବ କରିଥିବା ହେତୁ, କୃଷି ମନ୍ତ୍ରୀ ଆପଣା ସ୍ୱର୍ଣ୍ଣ ଜୀବନ ଇସ୍ତଫା ଦେଇଦେଲେ । ବିଭାଗର କର୍ମଚାରୀଙ୍କ ନିଜ ଦୋଷ ମନେ କରି ସମାଲୋଚନା ହେବାରୁ ଇସ୍ତଫା ଦେଇଲେ । ଏଥିରେ ଶାସନର ନୈତିକତା ରହିଲା । ପ୍ରତ୍ୟେକ ବିଭାଗ ମଧ୍ୟ ସତର୍କ ସ୍ୱଭାବ ଉଠିଲେ । ସେହିପରି ଇଂଲଣ୍ଡର ଅର୍ଥ ମନ୍ତ୍ରୀ ଡାଲ୍ଟନ୍ ମଧ୍ୟ ଥରେ ଇସ୍ତଫା ଦେଇଥିଲେ । ବଜେଟ୍ ପାର୍ଲିଆ-ମେଣ୍ଟରେ ଉପସ୍ଥିତ ହେବା ଆଗରୁ, ବଜେଟ୍‌ର କେତେକ କଥା ପଦାରେ ପ୍ରକାଶ ହୋଇଗଲା । ସେଥିପାଇଁ ଡାଲ୍ଟନ୍ ଇସ୍ତଫା ଦେଇ ରାଜନୀତିରୁ ଅବସର ପାଇଁ ବିଦାୟ ନେଲେ । ତେଣୁ ଇଂଲଣ୍ଡ ଗଣତନ୍ତ୍ରରେ ରେଡ୍ ଟେପିଜିମ୍ କମ୍ ଓ ନୈତିକତା ଓ ଦକ୍ଷତା ବେଶୀ । ତଥାପି ଏକଛତ୍ର ଶାସନ ପରି ଏଠି ସେଭଳି ଉପଦ୍ରବ ଘଟନା ନାହିଁ । ଏକଛତ୍ର ଶାସନରେ ଘଣ୍ଟାକେ ଘୋଡ଼ା ଛୁଟେ । ଏକା 'କଲମ ମୁନରେ ଯେତ ସହ କେତେ ଫାଶୀପାଅନ୍ତି କମ୍ପା ସେଇ ପଦେ କଥାରେ ଗୋଟିଏ କାରଖାନା ମୂଲ୍ୟ ଟେଣ୍ଡର ଉଠେ । ଅଳଙ୍କରଣ କ୍ଷମର ଯାଦୁପରି କ୍ଷଣ କ୍ଷଣକେ ସହର ବସେ ଓ ସହର ଭାଙ୍ଗେ । ଆଧୁନିକ ଯୁଗରେ ପୋଟେଟ୍‌ବେଲେ ଗୁରୁଅଧ୍ୟକ୍ଷ ପରିକଳ୍ପନା ବଢ଼ି ଚାଲିଛି ଓ ଲୋକେ ଉତ୍ତେଜନା ପୂର୍ଣ୍ଣ ଖବର ପ୍ରତି ଆଗ୍ରହରେ ଗୁହାଁ ରହୁଛନ୍ତି, ଓ

ସାଧାରଣଙ୍କ ଭିତରେ ଯେତେବେଳେ ମୂର୍ଖତା, ଦାରିଦ୍ର୍ୟ ଓ ସାମ୍ପ୍ରଦାୟିକ ଅଭାବ ଭିନ୍ନତା, ସେତେବେଳେ ଏକଛତ୍ର ଶାସନ ପ୍ରତି ଆଦର ବଢ଼ିବା ସ୍ୱାଭାବିକ । ତେଣୁ ଗଣତନ୍ତ୍ରର ମଙ୍ଗଳ ପାଇଁ ଜନସାଧାରଣଙ୍କ ଭିତରେ ନାଗରିକ-ଶିକ୍ଷାର ପ୍ରସାର ହେବା ଆବଶ୍ୟକ । ଚମକପ୍ରଦ ଘଟଣାରେ ଅଭିଭୂତ ହେବା ଏକ ଅଜ୍ଞତା ଛଡ଼ା ଆଉ କିଛି ନୁହେଁ । ଯାଦୁ ଖେଳର ଯାଦୁକରର ଏକ ହାତ ସଫେଇ, ଚମକପ୍ରଦ ଘଟଣା ସେହିପରି ଏକଛତ୍ର ଶାସକର ଏକ ଇନ୍ଦ୍ରଜାଲ । ଚମକପ୍ରଦ ଘଟଣା ସୃଷ୍ଟି କରି ଭେଳକି ଲଗାଇ ଶୀଘ୍ର ଜନପ୍ରିୟତା ହାସଲ କରିବା ଏକଛତ୍ର ଶାସକର ପ୍ରଧାନ ଲକ୍ଷ୍ୟ । ସେ ଦୃଷ୍ଟିରୁ ନାଗରିକ ଶିକ୍ଷାର ପ୍ରସାର ହେବା ଏକାନ୍ତ ଆବଶ୍ୟକ । ତାହେଲେ ବୋଧହୁଏ ହେତୁବାଦର ପ୍ରସାର ହେବ, ସ୍ୱତନ୍ତ୍ରଗତ ସିଦ୍ଧାନ୍ତ ପ୍ରତି ମମତା ଆସିବ । ତଥାପି ଏ କଥା ମାନିବାକୁ ହେବ ଯେ ଗଣତନ୍ତ୍ର-ଶାସନ ବେଗ ଦୃଷ୍ଟିରୁ ଯୁଦ୍ଧୋପଯୋଗୀ ନୁହେଁ । ଏଣୁ ବେଗର ବୃଦ୍ଧି ପାଇଁ ମଧ୍ୟ ଚେଷ୍ଟା ବ୍ୟବସ୍ଥା କରିବା ଉଚିତ । ତାହା ନ ହେଲେ ଶାସନ ଯେତେ ଭଲ ହେଲେ ମଧ୍ୟ, ସାଧାରଣ ଲୋକେ ତାକୁ ସହଜରେ ଗ୍ରହଣ କରି ପାରିବେ ନାହିଁ । ଶାସନରେ ଖାଲି ନ୍ୟାୟ ହେବା ଯେ ଉଚିତ, ତା ନୁହେଁ—ନ୍ୟାୟ ଶୀଘ୍ର ହେବା ଉଚିତ ।

ଆଉ ଗୋଟିଏ କଥା । ଗଣତନ୍ତ୍ରରେ ଆମେ ସମସ୍ତଙ୍କର ସହଯୋଗ ଲୋଡ଼ୁଁ । ସମସ୍ତେ ମିଳିମିଶି ଶାସନ ଚଳାଇବେ । ପରସ୍ପର ପ୍ରତି ସ୍ନେହ ଓ ସୌହାର୍ଦ୍ଦ୍ୟ ବଢ଼ିବ । ବହୁଲୋକଙ୍କ ଭିତରେ ଏହି ସ୍ନେହ ଓ ସୌହାର୍ଦ୍ଦ୍ୟ ଗଣତନ୍ତ୍ରର ମୂଳଭିତ୍ତି । ଯେ ଗଣତନ୍ତ୍ରରେ ବିଶ୍ୱାସ କରିବ, ସେ ଅନ୍ୟମାନଙ୍କର ମଙ୍ଗଳ କାମନା କରିବ । କିନ୍ତୁ ସମାଜରେ ଯେବେ ଅର୍ଥନୈତିକ ବିଭେଦ ଜାତ ହୋଇଥାଏ, ତାହେଲେ ପରସ୍ପର ସହଯୋଗ ପାଇବା ସମ୍ଭବ ନୁହେଁ । ଯେଉଁମାନେ ବେକାର

ସେମାନଙ୍କର ମନ୍ତ୍ର ଶୁଣିବାକୁ ରୁଚି ନାହିଁ, ଲୋକ ଭୋଟାଇବାକୁ ଲଗା ନାହିଁ, ଖେଳିବାକୁ ଦାନା ନାହିଁ, ସେମାନେ ଗଣତନ୍ତ୍ର ନାଗରିକ ହେବାର ସମ୍ଭାବନା କେଉଁଠି ? ଅର୍ଥନୈତିକ ବିଭେଦ ଶ୍ରେଣୀ ସଂଘର୍ଷ ବିନା ସୃଷ୍ଟି କରିବ, ଶ୍ରେଣୀ ସୌହାର୍ଦ୍ଦ୍ୟ ଆଣିବ କିପରି ? ତେଣୁ ଗଣତନ୍ତ୍ର-ଶାସନରେ ଏହି ବିଭେଦ ଦୂର କରି-ବାକୁ ପ୍ରଥମେ ଚେଷ୍ଟା ହେବା ଉଚିତ । କିନ୍ତୁ ଦୁଃଖର କଥା ସେ ପ୍ରଥମ ଓଲଟା ଦିଗରେ ଉଦ୍ୟମ କରୁଛେ । ଅନେକ ଅନ୍ନହୀନଙ୍କୁ ଖାଦ୍ୟ ବର୍ତ୍ତମାନ ଦରକାର ନାହିଁ । ଅଟେ କ ପୋଷାକ ପିନ୍ଧିବା, କ ଆରଣର ବକ୍ତୃତା କରିବା ଏ ସବୁ ସମାଜର ରୁଚି ଉପରେ ନିର୍ଭର କରେ । ଏହାକୁ ଅଳ୍ପ ଦିନ ବଦଳାଇଲା ସହଜ ନୁହେଁ । ହେଲେ ବି ସେଥିପାଇଁ ଅପେକ୍ଷା କରାଯାଇ ପାରେ । କିନ୍ତୁ ଅନ୍ନ ଜିନିଷ ଦରକାର ସମାଜରୁ ବିଭେଦ ଦୂର କରି ଏକ ପ୍ରଗତିଶୀଳ ସମାଜ ପ୍ରତିଷ୍ଠା କରିବ । ତା ନ ହେଲେ, ଗଣତନ୍ତ୍ର ସଫଳ ହୋଇ ପାରିବ ନାହିଁ ।

କିନ୍ତୁ ଗଣତନ୍ତ୍ରର ଦୋଷ ଅଛି ବୋଲି ଏକଛତ୍ର ଶାସନ ଗ୍ରହଣ କରିବା ବାଞ୍ଛନୀୟ •ଅବଶ୍ୟମ୍ଭାବୀ ନୁହେଁ । ଗଣତନ୍ତ୍ର ଅସଫଳ ହୋଇପାରେ । ଅସଫଳ ହେଲେ ମଧ୍ୟ ଏଥିରେ ସ୍ୱାଧୀନତା ଅଛି, ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଅଛି । କିନ୍ତୁ ଏକଛତ୍ର ଶାସନ ସଫଳ ଭଲ ହେଲେ ମଧ୍ୟ ସେଥିରେ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ନାହିଁ—ପରାଧୀନତା ଅଛି । ଏକଛତ୍ର ଶାସନରେ ଶୃଙ୍ଖଳାକୁ ଆଦର କରାଯାଏ, ସେଥିପାଇଁ ଆମେ ବିନା ଯାଞ୍ଚିବେ ଆଦେଶ ମାନି ଗାଇଁବାକୁ ଚାହାନ୍ତି, ସେମାନେ ପୂଜା ପା'ନ୍ତି । ସ୍ୱାଧୀନ ଚିନ୍ତା କରିବାର ଅଧିକାର ନାହିଁ । ଗଣତନ୍ତ୍ର ଗୁଣର ମୂଲ୍ୟ ଦିଏ । ସ୍ୱାଧୀନ ଚିନ୍ତା ଓ ସ୍ୱାଧୀନ ମତକୁ ପସନ୍ଦ କରେ । ଯୁକ୍ତିଯୁକ୍ତ ସମାଜରେ ଦେଖିବାର ଅଛି ବୋଲି

ବିଶ୍ୱାସ କରେ । ସମସ୍ତ ପ୍ରକାର ଲୋକଙ୍କୁ ନେଇ ସମାଜ ଗଢ଼ା-
ଯାଏ—ସଭ୍ୟତା ତିଆରି ହୁଏ । ତେଣୁ ସଭ୍ୟତାର ବିକାଶ ପାଇଁ
ପ୍ରତ୍ୟେକ ମତବାଦ ଦରକାର—ପ୍ରତ୍ୟେକ ଲୋକ ଦରକାର ।
ଏକଚ୍ଛତ୍ର ଶାସନ ପରି ଗୋଟିଏ ପ୍ରକାର ଲୋକ ବା ଗୋଟିଏ ପ୍ରକାର
ମତବାଦ ନୁହେଁ । ତେଣୁ ସବୁ ଦୋଷ ସତ୍ତ୍ୱେ ଆମକୁ ଗଣତନ୍ତ୍ରକୁ
ଗ୍ରହଣ କରିବାକୁ ହେବ । ଇ, ଏମ, ଫଷ୍ଟରଙ୍କ ଭାଷାରେ ଗଣତନ୍ତ୍ର-
ଶାସନ ନିର୍ଦୋଷଜ୍ଞାନ ନୁହେଁ—ଦୋଷଜ୍ଞାନ ହେବା ବି କେବେ
ସମ୍ଭବ ନୁହେଁ । କିନ୍ତୁ ଯେତେ ପ୍ରକାର ଶାସନ ପ୍ରଣାଳୀ ଅଛି,
ସବୁଠାରୁ ଏହା ଭଲ, ଶ୍ରେୟସ୍କର । ତେଣୁ ଏହାକୁ ଆମକୁ ସମର୍ଥନ
କରିବାକୁ ପଡ଼ିବ । ଏହାର ବିକାଶ ପାଇଁ ସବୁପ୍ରକାର ଦାୟିତ୍ୱ ମଧ୍ୟ
ବହନ କରିବାକୁ ହେବ ।

---

# ରାଜନୀତିକ ଦଳ

ଗଣତନ୍ତ୍ର ଶାସନର ସଫଳତା ପାଇଁ ଭିନ୍ନ ଭିନ୍ନ ରାଜନୀତିକ ଦଳ ଏକାନ୍ତ ପ୍ରୟୋଜନ । ଯେଉଁଠି ଏକ ଦଳ ଶାସନ କାର୍ଯ୍ୟ ପରିଚାଳନା କରେ ମଧ୍ୟ ବିରୋଧୀ ଦଳ ନ ଥିଲେ, ଶାସନରେ କିଛି ଶୃଙ୍ଖଳା ରହେ ନାହିଁ । ବିରୋଧ ଦଳର ଅଭାବରେ ସଂଖ୍ୟା-ଗରିଷ୍ଠ ଦଳ ନିଜ ମନମୁତାବକ ଶାସନ କାର୍ଯ୍ୟ ପରିଚାଳନା କରନ୍ତି । 'ବିରୋଧ' ଗଣତନ୍ତ୍ରର ଏକ ପ୍ରଧାନ ଅଙ୍ଗ । ଶାସନର ଦୋଷ ତ୍ରୁଟି ଦେଖାଇ ସମାଲୋଚନା କରିବା ପାଇଁ ଇଂଲଣ୍ଡ ପାର୍ଲିଆମେଣ୍ଟରେ ବିରୋଧ ଦଳର ନେତାଙ୍କୁ ସ୍ବତନ୍ତ୍ର ଦରମା ଦେବାର ବ୍ୟବସ୍ଥା କରାଯାଇଛି । ତେଣୁ ଶାସନ କାର୍ଯ୍ୟରେ ସଂଖ୍ୟା ଗରିଷ୍ଠ ଦଳର ଯେତିକି ଦାୟିତ୍ବ, ସଂଖ୍ୟାଲଘୁ ଦଳମାନଙ୍କର ମଧ୍ୟ ସେତିକି ଦାୟିତ୍ବ । ସେମାନେ ଅସେମ୍ବ୍ଲି ଓ ପାର୍ଲିଆମେଣ୍ଟରେ ପ୍ରଶ୍ନ ପଚାରି ଓ ସମାଲୋଚନା କରି, ଖବରକାଗଜରେ ନିଜ ମତ ବ୍ୟକ୍ତ କରି, ସଭା ସମିତିରେ ଲୋକମାନଙ୍କ ଆଗରେ ନିଜ ଦଳର ମତ ଉପସ୍ଥାପିତ କରି ସରକାରଙ୍କ କାର୍ଯ୍ୟକଳାପକୁ ଅନେକାଂଶରେ ନିୟନ୍ତ୍ରଣ କରନ୍ତି । ଯେଉଁ ଦେଶରେ ବିରୋଧ ଦଳ ଯେତିକି ଶକ୍ତିଶାଳୀ ସେ ଦେଶର ସରକାର ସେତିକି ଭଲ । କେବଳ ଯେ ଭଲ ସରକାର ପାଇଁ ଭିନ୍ନ ଭିନ୍ନ ରାଜନୀତିକ ଦଳ ଦରକାର ତା ନୁହେଁ, ବିନା ରାଜନୀତିକ ଦଳରେ ଗଣତନ୍ତ୍ର ଶାସନ ମଧ୍ୟ ତିଷ୍ଠି ପାରିବ ନାହିଁ ।

ଗଣତନ୍ତ୍ର ଶାସନରେ ସାବାଳକ ଭୋଟର ବ୍ୟବସ୍ଥା ଥାଏ । ଉଦାହରଣ ସ୍ବରୂପ ଭାରତର ୩୬ କୋଟି ଲୋକଙ୍କ ଭିତରୁ ପ୍ରାୟ ୧୮ କୋଟି ଲୋକଙ୍କର ଭୋଟ ଦେବାର ଅଧିକାର ଅଛି । ପ୍ରତ୍ୟେକ ଭୋଟରର ଏକ ଏକ ମତ । ପ୍ରତ୍ୟେକ ମନୁଷ୍ୟର ଭିନ୍ନ ଭିନ୍ନ ମତ

ହେବା ସ୍ୱାଭାବିକ । ମନୁଷ୍ୟ ମତ ଭିନ୍ନ ହୋଇଥାନ୍ତି ବା ଏହା ବିଭିନ୍ନ ଦଳରେ ବଣ୍ଟାଯାଇ ଥାନ୍ତି, ତାହେଲେ ମତଦ୍ୱୈଧର ପ୍ରଶ୍ନ ଉଠନ୍ତା ନାହିଁ । ପ୍ରତ୍ୟେକ ପ୍ରକାର ମତର ପ୍ରତିନିଧିମାନେ ମିଶି ଯଦି ସରକାର ଗଢ଼ିବେ, ତାହେଲେ ସେ ସରକାର କେବେ ଶକ୍ତି ପାଇବ ନାହିଁ । ଏହି ଭିନ୍ନ ଭିନ୍ନ ମତକୁ ମୀମାଂସା କରି ଦୁଇ ତିନି ପ୍ରକାର ରାଜନୈତିକ ମତ ସୃଷ୍ଟି କରିବା ପାଇଁ ରାଜନୈତିକ ଦଳର ଆବଶ୍ୟକତା ପଡ଼େ । ଏହି ରାଜନୈତିକ ଦଳମାନେ ନିଜର ନୀତି ଓ କାର୍ଯ୍ୟପନ୍ଥା ଲୋକମାନଙ୍କ ଆଗରେ ଥୋଇ, ସେମାନଙ୍କର ସମର୍ଥନ ହାସଲ କରିବାକୁ ଚେଷ୍ଟା କରନ୍ତି । ଫଳରେ ବିଭିନ୍ନ ସ୍ୱାଧୀନମତ କେତୋଟି ରାଜନୈତିକ ମତରେ ସମାଜରେ ପ୍ରକାଶ ପାଏ । ତେଣୁ ରାଜନୈତିକ ଦଳମାନେ ଜନସାଧାରଣଙ୍କର ବିକ୍ଷିପ୍ତ ଚିନ୍ତାଧାରାକୁ ସଙ୍ଗଠନ କରି ଦୃଢ଼ ସରକାର ଗଢ଼ିବାରେ ସାହାଯ୍ୟ କରନ୍ତି । ଭୋଟରମାନେ ଯେଉଁ ରାଜନୈତିକ ଦଳକୁ ଅଧିକ ସଂଖ୍ୟାରେ ଭୋଟ ଦେଇ ନିର୍ବାଚିତ କରନ୍ତି, ସେମାନେ ଶାସନ କ୍ଷମତା ହାସଲ କରନ୍ତି । ଅନ୍ୟ ଦଳମାନେ ଏହି ଅବସରରେ ଭୋଟରମାନଙ୍କ ଆଗରେ ପ୍ରଚାର କରି ନିଜ ଆଡ଼କୁ ଜନମତ ଟାଣି ଆଣିବାକୁ ଚେଷ୍ଟା କରନ୍ତି । ଗଣତନ୍ତ୍ର ଶାସନରେ ଗୋଟିଏ ଦଳ ସବୁବେଳେ କ୍ଷମତାରେ ରହେନାହିଁ । ଆଜି ଯେଉଁ ଦଳ କମ ଭୋଟ ପାଇ କ୍ଷମତା ହରାଇଛନ୍ତି, ହୁଏତ ପରଥରକୁ ଅଧିକ ଲୋକଙ୍କ ସମର୍ଥନ ପାଇ ସେହି ଦଳ କ୍ଷମତା ଅଧିକାର କରି ବସେ । ଇଂଲଣ୍ଡ ଓ ଆମେରିକା ପ୍ରଭୃତି ଗଣତାନ୍ତ୍ରିକ ଦେଶରେ ଏହାର ଅନେକ ଉଦାହରଣ ରହିଛି ।

ରାଜନୈତିକ ଦଳମାନେ ରାଜନୈତିକ ମତ ଯେ ସୃଷ୍ଟି କରନ୍ତି ତା ନୁହେଁ, ଲୋକମାନଙ୍କ ମଧ୍ୟରେ ଶିକ୍ଷାର ମଧ୍ୟ ପ୍ରଚାର କରନ୍ତି ।

ନିର୍ବାଚନ ସମୟରେ ସବୁ ଦଳ ଭୋଟରମାନଙ୍କ ଅନ୍ତରେ ନିଜର ମତ ପ୍ରଚାର କରନ୍ତି—ଅନ୍ୟ ଦଳର ମତ ଖଣ୍ଡନ କରିବାକୁ ଚେଷ୍ଟା କରନ୍ତି । ଅନେକ ସଭାସମିତି ଓ ଶୋଭାଯାତ୍ରା ହୁଏ । ଯେଉଁଥିରୁ ଶାସନ ବିଷୟରେ ଲୋକେ ଅନେକ କଥା ଜାଣନ୍ତି । ଭିନ୍ନ ଭିନ୍ନ ରାଜନୈତିକ ଦଳମାନଙ୍କର ପ୍ରଚାର ଓ ଅପପ୍ରଚାର ଯୋଗୁଁ ଜନସାଧାରଣଙ୍କ ମଧ୍ୟରେ ଦେଶର ଶାସନ-ନୀତି ଏକ ଆଗ୍ରହ ଜନ୍ମେ । ଭୋଟ ସମ୍ପୃକ୍ତ ନିଜର ଭବିଷ୍ୟତ ନିର୍ଭର କରୁଛି ବୋଲି ଅନ୍ତତଃ କେତେକ ଭୋଟର ଭାବନ୍ତି । ତେଣୁ ଭୋଟ ଦେବା ପୂର୍ବରୁ ପ୍ରତ୍ୟେକ ଦଳର ନୀତି ଓ କାର୍ଯ୍ୟପନ୍ଥା ବିଚାର କରି ଭୋଟ ଦେବାକୁ ଚେଷ୍ଟା କରନ୍ତି । ଏହି ଭୋଟ-କ୍ଷମତା ଫଳରେ ସାଧାରଣ ଲୋକଙ୍କର ମର୍ଯ୍ୟାଦା ବି ଟିକିଏ ବଢ଼େ । ଅନ୍ୟତଃ ଭୋଟ ଅଧିକାରରେ ସମସ୍ତଙ୍କର ସମାନ ଅଧିକାର ଥିବାରୁ, ଭୋଟ ପ୍ରାର୍ଥୀ-ମାନେ ସାଧାରଣ ଲୋକଙ୍କର ମନନେବା ଭଳି କିଛି କିଛି କାମ କରିବାକୁ ଚେଷ୍ଟା କରନ୍ତି । ମୋଟ ଉପରେ କହିଲେ ଚଳେ, ରାଜନୈତିକ ଦଳମାନଙ୍କ ଯୋଗୁଁ ଗଣତନ୍ତ୍ର-ଶାସନ ସଫଳ ହୁଏ । ଦଳଗତ ଶାସନରେ ଯେ ଦୋଷ ନାହିଁ, ତା ନୁହେଁ । କିନ୍ତୁ ସବୁ ଦୋଷ ସତ୍ତ୍ୱେ, ଗଣତନ୍ତ୍ର-ଶାସନରେ ରାଜନୈତିକ ଦଳମାନଙ୍କର ଯେ ଆବଶ୍ୟକତା ଅଛି, ତାହା ସମସ୍ତେ ମାନିବେ ।

ଗଣତନ୍ତ୍ର-ଶାସନ ପାଇଁ ଯେଉଁ ରାଜନୈତିକ ଦଳ ଦରକାର, ରାଜନୈତିକ ଦଳଗୁଡ଼ିକ ମଧ୍ୟ ଗଣତାନ୍ତ୍ରିକ ନୀତିରେ ଗଢ଼ାଯିବା ଉଚିତ । କାରଣ ଗଣତନ୍ତ୍ର କେବଳ ଏକ ଶାସନ ବ୍ୟବସ୍ଥା ନୁହେଁ ଏହା ମଧ୍ୟ ଏକ ରାଜନୈତିକ ପ୍ରଣାଳୀ । ପ୍ରଣାଳୀରେ ଭୁଲ ହେଲେ ଲକ୍ଷ୍ୟରେ ମଧ୍ୟ ଭୁଲ ହୋଇପାରିବା ସ୍ୱାଭାବିକ । ଆମ ଦେଶରେ ଏକୋଟି ପ୍ରଧାନ ରାଜନୈତିକ ଦଳ—କଂଗ୍ରେସ, ପ୍ରଜାସୋସିଆଲିଷ୍ଟ ,

କମ୍ୟୁନିଷ୍ଟ। ବର୍ତ୍ତମାନ ଏହି ତିନୋଟି ଦଳ କଥା ବିଚାର କରାଯାଉ । କଂଗ୍ରେସ ଓ ପ୍ରଜାସୋସିଆଲିଷ୍ଟ ଦଳରେ ଯେ କୌଣସି ଲୋକ ସଭ୍ୟ ହୋଇ ପାରିବେ । ଯେଉଁମାନେ କଂଗ୍ରେସ ନୀତିରେ ବିଶ୍ୱାସ କରନ୍ତି, ସେମାନେ କଂଗ୍ରେସର ସଭ୍ୟ ବିନା ବାଧାରେ ହୋଇ-ପାରିବେ । ସେହିପରି ମଧ୍ୟ ପ୍ରଜା ସୋସିଆଲିଷ୍ଟ ଦଳରେ ସଭ୍ୟ ହେବା ପାଇଁ ସେପରି କିଛି ବେଶି କଟକଣା ନାହିଁ । କିନ୍ତୁ କମ୍ୟୁନିଷ୍ଟ ଦଳରେ ସଭ୍ୟ ହେବାରେ ସମସ୍ତଙ୍କର ଅଧିକାର ନାହିଁ । କମ୍ୟୁ-ନିଜିମରେ ବିଶ୍ୱାସ କରୁଥିଲେ ମଧ୍ୟ କମ୍ୟୁନିଷ୍ଟପାର୍ଟିର ସଭ୍ୟ ହେବା ପାଇଁ ଅନେକ ଯୋଗ୍ୟତା ଦରକାର । କମ୍ୟୁନିଷ୍ଟମାନେ ସ୍ୱତନ୍ତ୍ର ଯେ ନେତୃତ୍ୱ ଦେବା ପାଇଁ ସେମାନେ ଜନ୍ମ । ସିଡ଼ନି ଓଏବଙ୍କ (Sydney weeb) ଙ୍କ ଭାଷାରେ ନେତୃତ୍ୱ ଦେବା କମ୍ୟୁନିଷ୍ଟ ମାନଙ୍କର ବ୍ୟବସାୟ । ତେଣୁ ଯେଉଁମାନେ କମ୍ୟୁନିଷ୍ଟ ମତ ପ୍ରଚାର କରିବାରେ ନେତୃତ୍ୱ ନେଇପାରିବେ, ସେହିମାନେ କେବଳ କମ୍ୟୁନିଷ୍ଟ ଦଳର ସଭ୍ୟ ହୋଇ ପାରିବେ । ଦଳ ଭିତରେ ମଧ୍ୟ ମତ ପ୍ରକାଶ କରିବା ପାଇଁ ସମସ୍ତଙ୍କ ଅଧିକାର ନାହିଁ । କଂଗ୍ରେସ ବା ପ୍ରଜାସୋସିଆଲିଷ୍ଟ ଦଳ ଭିତରେ ଭିନ୍ନ ଭିନ୍ନ ମତବାଦର ଲୋକ ଅଛନ୍ତି । ସାଧାରଣ ଅଧିବେଶନରେ ଏହି ସବୁ ଭିନ୍ନ ଭିନ୍ନ ମତ ନେଇ ଆଲୋଚନା ଓ ସମାଲୋଚନା ହେଉଛି । ଯେଉଁ ମତ ଅଧିକ ଭୋଟରେ ଗ୍ରହଣ କରାଯାଉଛି, ସେହି ମତ ସମସ୍ତେ ମାନି ନେଉଛନ୍ତି । କିନ୍ତୁ କମ୍ୟୁନିଷ୍ଟ ଦଳ ଭିତରେ ମତଦ୍ୱୈଧର ସ୍ଥାନ ନାହିଁ । ଗୋଟିଏ ମତ ସମସ୍ତଙ୍କୁ ସଭ୍ୟ ମାନିନେବାକୁ ବାଧ୍ୟ । ଏହି ସମୟରେ ପି. ସି. ଯୋଶୀ କମ୍ୟୁନିଷ୍ଟ ପାର୍ଟିର ପରିଚାଳନା କରୁଥିଲେ ଯୁଦ୍ଧ ପରେ ତାଙ୍କ ମତ ଗ୍ରହଣ କରାଗଲା ନାହିଁ—ତେଣୁ ସେ ପାର୍ଟିରୁ ତଡ଼ା ଖାଇଲେ । ଲୁଚିଆ ହୋଇଥିଲେ ଜୁଏତ ସେ

ଫାଶୀକାଠରେ ଝୁଲୁଅଛନ୍ତି । ତେଣୁ କମ୍ୟୁନିଷ୍ଟ ଦଳରେ ଭିନ୍ନ ଭିନ୍ନ ମତ ପ୍ରତି ଆଦର ନାହିଁ । ସବୁ ସଭ୍ୟ ଗୋଟିଏ ଛାଞ୍ଚରେ ଗଢ଼ା ହେବାକୁ ବାଧ୍ୟ । ଦଳର ନେତାମାନେ ମଧ୍ୟ କର୍ମୀଙ୍କ କଥା ଶୁଣନ୍ତି ନାହିଁ । କମ୍ୟୁନିଷ୍ଟ ପାର୍ଟି ଭିତରେ ଅନେକ ସେଲ୍ ଅଛି । କିନ୍ତୁ ଭିନ୍ନ ଭିନ୍ନ ସେଲ୍ ଭିତରେ କୌଣସି ସମ୍ପର୍କ ନାହିଁ । ପ୍ରତ୍ୟେକ ସେଲ୍‌କୁ ଉପରୁ ନିର୍ଦ୍ଦେଶ ଆସେ ଏବଂ ସେହି ନିର୍ଦ୍ଦେଶ ଅନୁସାରେ ପ୍ରତ୍ୟେକ ସେଲ୍ କାମ କରେ । ତେଣୁ କମ୍ୟୁନିଷ୍ଟ ପାର୍ଟି ଭିତରେ ମତର ଆଦାନ ପ୍ରଦାନ ହୁଏ ନାହିଁ ।

ସାମ୍ୟବାଦୀ ନେତା ଅଶୋକ ମେହେଟା "ଗଣତାନ୍ତ୍ରିକ ସମାଜବାଦ" ନାମକ ଯେଉଁ ପୁସ୍ତକ ପ୍ରକାଶ କରିଛନ୍ତି ସେଥିରେ ଗଣତାନ୍ତ୍ରିକ ପାର୍ଟି ଓ ଏକଛତ୍ର ପାର୍ଟିର ( Totalitarian Party ) ଏକ ସୁନ୍ଦର ତୁଳନା ଦେଇଛନ୍ତି । ଗଣତାନ୍ତ୍ରିକ ପାର୍ଟିରେ ସଭ୍ୟ ହେବାରେ କଟକଣା ନାହିଁ । ମତର ଆଦାନ ପ୍ରଦାନ ଅଛି । ଭିନ୍ନ ଭିନ୍ନ ମତ ପ୍ରତି ଆଦର ଅଛି । ପାର୍ଟିର ନେତାମାନେ କର୍ମୀମାନଙ୍କ ମତ ନେଇ କାର୍ଯ୍ୟ କରନ୍ତି । କିନ୍ତୁ ଏକଛତ୍ର ପାର୍ଟିରେ ସଭ୍ୟ ହେବା ପାଇଁ କଟକଣା । ଯେଉଁମାନେ ସଭ୍ୟ ହେବେ ସେମାନେ ଭିନ୍ନ ଭିନ୍ନ ମତପୋଷଣ କରିପାରିବେ ନାହିଁ । ଶୃଙ୍ଖଳାସୂତ୍ରରେ ଉପରୁ ଯେଉଁ ନିର୍ଦ୍ଦେଶ ଆସିବ ତାକୁ ସମସ୍ତେ ମାନି-ନେବାକୁ ବାଧ୍ୟ । ଉପରୁ ତଳକୁ ନିର୍ଦ୍ଦେଶ ଦେବାର ଅଧିକାର ଅଛି । ତଳୁ ଉପରକୁ ନିର୍ଦ୍ଦେଶ ଦେବାର ଅଧିକାର ନାହିଁ । ଅର୍ଥାତ୍ ପାର୍ଟିର ସାଧାରଣ ସଭ୍ୟମାନେ ପାର୍ଟିର ନୀତି ଠିକ କରିପାରିବେ ନାହିଁ । ପାର୍ଟିର ନେତାମାନେ ଯେଉଁ ନୀତି ଠିକ କରିବେ ତାହା କର୍ମୀମାନେ ବିନାପ୍ରଶ୍ନରେ ମାନି ନେବେ । ବାସ୍ତବରେ କର୍ମୀମାନଙ୍କ ଭିତରେ ମଧ୍ୟ ମତର ଆଦାନ ପ୍ରଦାନ ହୋଇ ପାରିବ

ନାହିଁ । କର୍ମୀମାନେ ସିଧାସଳଖ ଉପରକୁ ମତ ପଠାଇବେ । ଉପରୁ ସିଧା ସଳଖ ସେମାନଙ୍କ ପାଖକୁ ନିର୍ଦ୍ଦେଶ ଆସିବ । ଏ ହେଲା ପାର୍ଟି ସଂଗଠନ ନୀତି ପ୍ରଭେଦ । ତ ସଂଗଠନ ନୀତି ମଧ୍ୟ ଉଭୟଙ୍କ ପ୍ରଚାର ନୀତି ଭିତରେ ଫରକ ଅଛି । ଗଣତାନ୍ତ୍ରିକ ଦଳମାନେ ଗଣତାନ୍ତ୍ରିକ ଉପାୟରେ କ୍ଷମତା ଅଧିକାର କରିବାକୁ ଚାହାନ୍ତି । କିନ୍ତୁ ଏକଛତ୍ର ପାର୍ଟିରେ ସେପରି କିଛି ବନ୍ଧା ନିୟମ ନାହିଁ । ଯେ କୌଣସି ଉପାୟରେ କ୍ଷମତା ହାସଲ କରାଯାଇ ପାରେ । ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସେକ୍ରେଟେରୀ ଶ୍ରୀଯୁକ୍ତ ଅଜୟ ଘୋଷ ଏବେ ମଦୁରାର ଷ୍ଟବରେ ଘୋଷଣା କରିଛନ୍ତି ଯେ ଅହିଂସା ବା ହିଂସା ଏଭଳି କିଛି ନୀତି ସେମାନେ ମାନି ନେଇ ନାହାନ୍ତି । ତା' ଅର୍ଥ ଯେତେବେଳେ ଯାହା ସୁବିଧା ବୋଲି ଜଣା ପଡ଼ିବ, ସେତେବେଳେ ସେ ପନ୍ଥା ସେମାନେ ଅବଲମ୍ବନ କରିବେ । ବର୍ତ୍ତମାନ ପାର୍ଲିଅମେଣ୍ଟାରୀ ପ୍ରଥାଟା ସୁବିଧା ଜଣା ପଡ଼ୁଛି । କିନ୍ତୁ ପାର୍ଲିଅମେଣ୍ଟକୁ ଯାଇ ଗଣତନ୍ତ୍ର ଶାସନ ପ୍ରଚଳନ କରିବାରେ ସେମାନଙ୍କର ଟିକେ ମୋଟ ଇଚ୍ଛା ନାହିଁ । ପାର୍ଲିଅମେଣ୍ଟ ସାହାଯ୍ୟରେ ପ୍ରତିଷ୍ଠିତ ବ୍ୟବସ୍ଥାକୁ ବଦନାମ କରିବା ପ୍ରଧାନ ଉଦ୍ଦେଶ୍ୟ । ନିର୍ବାଚନ ଲଢ଼େଇ ପାଇଁ ଅନ୍ୟାନ୍ୟ ଦଳସହିତ ଯେଉଁ ସହଯୋଗ ହେଉଛି, ତାହା ମଧ୍ୟ ଏଇ ଚାଲବାଜି । ଏଥିରେ ଅନ୍ୟାନ୍ୟ ଦଳ ପଛାରେ ପଡ଼ିବେ— କମ୍ୟୁନିଷ୍ଟ ପାର୍ଟି ଫାଇଦା ଉଠାଇବେ । ମୋଟ ଉପରେ କ୍ଷମତା ହାସଲ ପାଇଁ ଯେ କୌଣସି ପନ୍ଥା ଅବଲମ୍ବନ କରିବାକୁ ସେମାନେ ପଶ୍ଚାତପଦ ନୁହନ୍ତି । ଅନ୍ୟାନ୍ୟ ରାଜନୈତିକ ଦଳ କ୍ଷମତା ହାସଲ କରିବାକୁ ଯେ ଇଚ୍ଛା କରୁ ନାହାନ୍ତି, ତା ଆମେ କହୁ ନାହୁଁ । ଏଥିପାଇଁ ଅନ୍ୟାନ୍ୟ ଦଳ ମଧ୍ୟ ଅନେକ ସମୟରେ ଗର୍ହିତ ପନ୍ଥା ଅନୁସରଣ କରୁଛନ୍ତି । କିନ୍ତୁ ସେମାନେ ଗର୍ହିତ ପନ୍ଥାକୁ ଖୋଲା

ବୋଲି ମାନୁଛନ୍ତି—କମ୍ୟୁନିଷ୍ଟମାନେ ସେହି ପନ୍ଥାକୁ ଠିକ୍ ବୋଲି କହୁଛନ୍ତି । ଯେଉଁ କଥାକୁ ଭୁଲ୍ ବୋଲି ଧରାଯାଏ, ତାକୁ କହିବାରେ କିଛିଏ ସଙ୍କୋଚ ଲାଗେ—ଜନମତ ମଧ୍ୟ ତା ବିରୁଦ୍ଧରେ ଯାଏ । ତେଣୁ ଭୁଲ ଓ ଠିକ୍ କହିବାରେ ଅନେକ ଗୁରୁତ୍ୱ ଅଛି ।

କମ୍ୟୁନିଷ୍ଟମାନଙ୍କ କାର୍ଯ୍ୟ ପନ୍ଥାକୁ ଆମେ ଯାହା କହୁ ନାହା କହିଛୁ, ସେଥିରେ ସେମାନେ ଦୁଃଖିତ ନୁହନ୍ତି—ବରଂ ସେମାନେ ମାର୍କସ ଓ ଲେନିନଙ୍କ ବାଣୀ ଶୁଣାଇ ତାର ଯଥାର୍ଥତା ପ୍ରତିପାଦନ କରନ୍ତି । ମାର୍କସ ଅନେକ ସାମ୍ୟବାଦୀ ଓ କମ୍ୟୁନିଷ୍ଟଙ୍କର ଭଗବାନ । ଖ୍ରୀଷ୍ଟିଆନ୍‌ମାନେ ବାଇବଲକୁ ଯେପରି ଭଗବାନଙ୍କ ନିଃସୃତ ବାଣୀ ବୋଲି ମାନନ୍ତି, କମ୍ୟୁନିଷ୍ଟମାନେ ମଧ୍ୟ ମାର୍କସଙ୍କ ତଥା କମ୍ୟୁନିଷ୍ଟ ମାନିଫେଷ୍ଟୋ ଓ ଦାସ୍ କାପିଟାଲକୁ ସେହି ଦୃଷ୍ଟିରେ ଦେଖନ୍ତି । ମାର୍କସ ୧୦୦ ବର୍ଷ ତଳେ ଲେଖିଥିଲେ । ତାଙ୍କର ଅର୍ଥନୀତି ଓ ରାଜନୀତିରେ ଅନେକ ଭୁଲ୍ ହୋଇ ଗଲାଣି । କିନ୍ତୁ ତଥାପି ସେ ଭୁଲ ମାନିବାକୁ କେହୁ ପ୍ରସ୍ତୁତ ନୁହନ୍ତି । ମାର୍କସଙ୍କର ଆଲୋଚନାରେ ଭୁଲ୍ ଅଛି ବୋଲି ମାନି ସାମ୍ୟବାଦୀ ହେଲେ କଣ ଯେ କ୍ଷତି, ତା ବୁଝିବା ଆମ ପକ୍ଷରେ କଷ୍ଟ । କମ୍ୟୁନିଷ୍ଟପାର୍ଟିର କାର୍ଯ୍ୟକଳାପର ଯଥାର୍ଥତା ପ୍ରମାଣ କରିବାପାଇଁ ଲେନିନ୍ ଓ ଷ୍ଟାଲିନ୍‌ଙ୍କର ବକ୍ତବ୍ୟକୁ ଅନେକ ସମୟରେ ଉଦାହରଣ ଦିଆଯାଏ । କିନ୍ତୁ ଯେଉଁମାନେ ରାଜନୈତିକ ବା ସାମାଜିକ ସଂଘର୍ଷରେ କ୍ଷଣି ଉତ୍ତାପ ସୃଷ୍ଟି କରନ୍ତି, ସେମାନେ ଯେ ସବୁବେଳେ ଠିକ୍ ତା କୁହାଯାଇ ନ ପାରେ । ଉତ୍ତାପ ବଳିଷ୍ଠ ଗୁଣ ଦର୍ଶନା କରେ । କିନ୍ତୁ ଉତ୍ତପ୍ତ ସବୁ-ବେଳେ ସତ୍ୟର ଅନୁସନ୍ଧାନ କରେ ନାହିଁ । ସେ ଯାହାବେଳକୁ ୧ କଥା ସର୍ବାଙ୍ଗ ସତ୍ୟ ( କମ୍ୟୁନିଷ୍ଟମାନଙ୍କ ମିଶନ ) ସେ

କମ୍ୟୁନିଷ୍ଟମାନେ ଗଣତାନ୍ତ୍ରିକ ପନ୍ଥାରେ ବିଶ୍ୱାସ କରନ୍ତି ନାହିଁ ବର୍ତ୍ତମାନ ଉଦ୍ଦେଶ୍ୟ ତଥ୍ୟ ଦେଖାଯାଉ ।

କଂଗ୍ରେସ ଓ ପ୍ରଜାସୋସିଆଲିଷ୍ଟ ଦଳ ଗଣତନ୍ତ୍ରରେ ବିଶ୍ୱାସ କରନ୍ତି । କଂଗ୍ରେସ ଶାସନର ଯେଉଁମାନେ ସମାଲୋଚନା କରନ୍ତି, ସେମାନେ ମଧ୍ୟ ମାନନ୍ତି ଯେ କଂଗ୍ରେସ ଶାସନରେ ବ୍ୟକ୍ତିଗତ ସ୍ୱାଧୀନତା ଅଛି । ଏବଂ ଅପର ପକ୍ଷରେ ସବୁ ତ୍ରୁଟି ଏହି ବ୍ୟକ୍ତିଗତ ସ୍ୱାଧୀନତା ଏତେ ଅଧିକ ଯେ ଦୋଷୀଙ୍କୁ ଦଣ୍ଡ ଦେବାରେ କଷ୍ଟ ହୋଇ ପଡ଼ୁଛି । ରାଜନୀତି ବିଷୟରେ ଯେଉଁମାନେ ଗବେଷଣା କରି ଲେଖିଛନ୍ତି, ସେମାନଙ୍କ ବ୍ୟାଖ୍ୟାକୁ ଯଦି ଆମେ ଗ୍ରହଣ କରୁଁ, ତାହାହେଲେ ଆମ ସମ୍ବିଧାନ ଗଣତନ୍ତ୍ର ସୂତ୍ରରେ ଗଢ଼ାଯାଇଛି ବୋଲି ମାନିବାକୁ ହେବ । ପ୍ରଜା ସୋସିଆଲିଷ୍ଟମାନେ ମଧ୍ୟ ଗଣ-ତନ୍ତ୍ରରେ ବିଶ୍ୱାସ କରନ୍ତି । ସେମାନେ ଗଣତାନ୍ତ୍ରିକ ଉପାୟରେ ସାମ୍ୟବାଦ ପ୍ରତିଷ୍ଠା କରିବାକୁ ଚାହାନ୍ତି । କିନ୍ତୁ କମ୍ୟୁନିଷ୍ଟମାନଙ୍କ ପାଖରେ ଗଣତନ୍ତ୍ର କଥା ନାହିଁ । ସେମାନେ ବିରୋଧ ଦଳକୁ ଗ୍ରହଣ କରିବାକୁ ଆଦୌ ପ୍ରସ୍ତୁତ ନୁହନ୍ତି । ଏପରିକି ଶ୍ରମିକମାନଙ୍କର ବିରୋଧ ଦଳ ମଧ୍ୟ ସେମାନେ ଗ୍ରହଣ କରିପାରିବେ ନାହିଁ । କାରଣ ସେମାନଙ୍କ ମତରେ ଗୋଟିଏ ଶ୍ରେଣୀର ଗୋଟିଏ ରାଜନୀତିକ ଦଳ ରହିପାରେ । ତାହାଠାରୁ ଅଧିକ ନୁହେଁ । ତେଣୁ ଶ୍ରମିକ ମାନଙ୍କର ଏକମାତ୍ର ରାଜନୀତିକ ଦଳ କମ୍ୟୁନିଷ୍ଟ ଦଳ । ଅନ୍ୟ ଯେ କୌଣସି ଦଳ ସାମ୍ୟବାଦ କଥା କହିଲେ ମଧ୍ୟ ସେମାନେ ତାକୁ ପୁଞ୍ଜିପତିଙ୍କର ଦଲାଲ ବୋଲି କହିବେ । ସେଥିପାଇଁ ରୁଷିଆରେ ବର୍ତ୍ତମାନ ଗୋଟିଏ ଦଳ । ରୁଷିଆରେ କମ୍ୟୁନିଜିମ ଏବଂ ଜନତାର ତଥାକଥିତ ପ୍ରତିନି-କମ୍ୟୁନିଷ୍ଟ ପାର୍ଟିର ଏକଛତ୍ର ଶାସନର ଶେଷ ନହେଲା । ଏହାକୁ ଗଣତନ୍ତ୍ର କୁହାଯାଇ ନପାରେ । ପୃଥିବୀର ସବୁଦେଶର କମ୍ୟୁନିଷ୍ଟ

ପାର୍ଟି ଏହି ମତରେ ବିଶ୍ୱାସ କରନ୍ତି । କମ୍ୟୁନିଷ୍ଟ ରାଜ୍ୟରେ କେବଳ କମ୍ୟୁନିଷ୍ଟ ପାର୍ଟିକୁ ସ୍ୱାଧୀନତା ଦିଆଯାଇଛି, ଯାହା କି ପାର୍ଟିର ସବୁ ସଭ୍ୟଙ୍କ ପାଇଁ ନୁହେଁ । କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇ ଦେଶରେ କମ୍ୟୁନିଷ୍ଟ ପାର୍ଟିର ଶାସନ ଦୃଢ଼ କରିବାରେ ସାହାଯ୍ୟ କରୁଥିଲେ ବି ନେତାଙ୍କ ସହିତ ଅପଡ଼ ହେଲେ ନିଜର ସତ୍ତା ରହେ ନାହିଁ । ଟ୍ରଟସ୍କି ଓ ଚେବିଅଙ୍କ ଜୀବନୀ ଉଦାହରଣ ଆମ ଆଗରେ ରହିଛି ।

ସାଧାରଣ ନିର୍ବାଚନ ଗଣତନ୍ତ୍ରର ଏକ ବିଶିଷ୍ଟ ଅଙ୍ଗ । କିନ୍ତୁ କମ୍ୟୁନିଷ୍ଟମାନେ ସେଥିରେ ସେତେ ବିଶ୍ୱାସ କରନ୍ତି ନାହିଁ । କାରଣ ସେମାନଙ୍କ ମତରେ ଶ୍ରମିକର ଯାହା ଦରକାର ତାହା ଶ୍ରମିକଠାରୁ ନେତାମାନେ ଅଧିକ ଜାଣନ୍ତି । ଲେଓମୋଲେନ୍ ସାସ୍ତ୍ରାତ୍ୟ ସାମ୍ୟବାଦ ନାମକ ଏକ ପୁସ୍ତକରେ ଲେନିନ୍‌ଙ୍କ ବକ୍ତୃତାରେ କହିଥିଲେ ଯେ, ଯେଉଁପର୍ଯ୍ୟନ୍ତ ଲୋକମାନେ ନେତାମାନଙ୍କ ପଛରେ ଅଛନ୍ତି, ସେ ପର୍ଯ୍ୟନ୍ତ ସେମାନେ ନେତାମାନଙ୍କୁ ବିଶ୍ୱାସ କରନ୍ତି । ଲେନିନ୍ କମ୍ୟୁନିଷ୍ଟ ପାର୍ଟିର ଜନ୍ମଦାତା । ତେଣୁ କମ୍ୟୁନିଷ୍ଟ ପାର୍ଟି ମଧ୍ୟ ସେ କଥା ଉପରେ ଅଟଳ ଥାଆନ୍ତି । ରୁଷିଆ ବା ଅନ୍ୟାନ୍ୟ କମ୍ୟୁନିଷ୍ଟ ରାଜ୍ୟରେ ଯେଉଁ ନିର୍ବାଚନ କଥା ଶୁଣାଯାଏ ତାହା ଏକ ପ୍ରହସନ । ଏଥିରେ ବିରୋଧ ଦଳର କେହି ପ୍ରାର୍ଥୀ ନଥାନ୍ତି । ତେଣୁ ଭୋଟରମାନଙ୍କୁ ଭଲ ଭଲ ପ୍ରାର୍ଥୀ ବାଛି ଭୋଟ ଦେବାକୁ ସୁଯୋଗ ମିଳେନାହିଁ । କମ୍ୟୁନିଷ୍ଟ ପାର୍ଟିର ସବୁ ପ୍ରାର୍ଥୀ । ଭୋଟରମାନେ କେବଳ ହଁ ବା ନାହିଁ କହିବା କଥା । କିନ୍ତୁ ନାହିଁ କହିଲେ ସରକାରଙ୍କ କଣ୍ଟା ଦୃଷ୍ଟି ପଡ଼ିବ । ତେଣୁ ହଁ କରିବାକୁ ବାଧ୍ୟ । ହିଟଲର ଜର୍ମାନୀରେ ଏହି ପନ୍ଥା ଅବଲମ୍ବନ କରିଥିଲେ । ଇରାନରେ ମୋସାଦେକ୍ ମଧ୍ୟ ହିଟଲରଙ୍କର ପନ୍ଥା ଧରିଲେ । କମ୍ୟୁନିଷ୍ଟମାନେ ନୂଆ କଥା କହୁଛନ୍ତି । କିନ୍ତୁ କମ୍ୟୁନିଷ୍ଟମାନେ ଜାଣିଶୁଣି ହେଲେ ଏହାକୁ ଉନ୍ନତ ଧରଣର ଗଣତନ୍ତ୍ର କୁହାଯାଉଛି

କମ୍ୟୁନିଷ୍ଟମାନଙ୍କ ଅଭିଧାନରେ ସବୁ ଶବ୍ଦର ଅର୍ଥ ଅଲଗା । ସୁତରାଂ ଯେତେବେଳେ ତିବ୍ବତ ଦଖଲ କଲା, ସେ ତାକୁ 'ଦଖଲ' ନ କହି ସ୍ୱାଧୀନତା ବୋଲି କହୁଥିଲେ । ତେଣୁ ସର୍ବଦଳ ପ୍ରତିନିଧିମାନଙ୍କର ଏକଛତ୍ର ଶାସନକୁ ଗଣତନ୍ତ୍ର ବୋଲି କହୁଥିବା ଆଶ୍ଚର୍ଯ୍ୟ ହେବାର କଣ ଅଛି ?

ହୁଏତ ଏଠାରେ ପ୍ରଶ୍ନ ହୋଇ ପାରେ ଯେ ଗଣତନ୍ତ୍ର ଠାରୁ ଏକଛତ୍ର ଶାସନ ଭଲ । ସେଇଟା ଅଲଗା କଥା । ଆମ ମତରେ ଗଣତନ୍ତ୍ର ଶାସନ ସବୁ ଠାରୁ ଭଲ । ଗଣତାନ୍ତ୍ରିକ ଉପାୟରେ ସାମ୍ୟବାଦ ମଧ୍ୟ ପ୍ରତିଷ୍ଠା କରାଯାଇ ପାରେ । ଇଂଲଣ୍ଡର ଶ୍ରମିକଦଳ ସେହି ପଥରେ ଅନେକ ଦୂର ଆଗେଇ ପାରିଛନ୍ତି । ଏ କଥା ସତ ଯେ ଏକଛତ୍ର ଶାସନରେ ଏକା କଲମ ମୁନରେ ଅନେକ କଷ୍ଟ ଦୂରହେବ । କିନ୍ତୁ ଗଣତନ୍ତ୍ର ଶାସନରେ ପାଞ୍ଚଜଣଙ୍କ ବୁଦ୍ଧି ବିମର୍ଶ ଦ୍ୱାରା ଶୀଘ୍ର କୌଣସି କାମ କରିବାକୁ ଡେରି ହୁଏ । ଡେରି ହେଲେ ବି ଯାହା ପାଞ୍ଚଜଣଙ୍କ ବିଚାର କରାଯାଏ, ସେଥିରେ ମନ୍ଦ ଅପେକ୍ଷା ଭଲର ସମ୍ଭାବନା ବେଶୀ । କିନ୍ତୁ ଯାହା ଜଣକ ହାତରେ ନ୍ୟସ୍ତ ଦିଆଯାଏ, ସେଥିରେ ଭଲ ଅପେକ୍ଷା ଖରାପର ସମ୍ଭାବନା ବେଶୀ ଏଥିପାଇଁ ଜର୍ମାନୀର ହିଟଲର ଓ ଇଟାଲୀର ମୁସୋଲିନିଙ୍କ ଉଦାହରଣ ଆମ ଆଗରେ ଦୃଷ୍ଟାନ୍ତ ରୂପେ ରହିଛି । ଏକଛତ୍ର ଶାସନରେ ମଧ୍ୟ ମାମାଙ୍କର ମନୋବୃତ୍ତି ଅଲଗା । ଋଷିଆରେ ଲେନିନ୍‌ଙ୍କୁ ଗୋଟିଏ ବାଳିକା ମାରିବାକୁ ଚେଷ୍ଟା କଲା । ଲେନିନ୍ ଆହତ ହେଲେ । ଏହାପରେ ୫୦୦ ଲୋକ ଗିରଫ ହୋଇ ବିନା ବିଚାରରେ ଫାଶି ଖୁଣ୍ଟରେ ଝୁଲିଲେ । ଆମ ଦେଶରେ କିନ୍ତୁ ଗାନ୍ଧିଜୀଙ୍କ ପରି ଏକ ମହାପୁରୁଷ ଜଣେ ନିର୍ବୋଧ ଅତତାୟୀ ଦ୍ୱାରା ନିହତ ହେଲେ । ତଥାପି ସେ ଅତତାୟୀକୁ ଦଣ୍ଡଦେବା ପାଇଁ ମଧ୍ୟ ସରକାର ଅଦାଲତରେ

ନେତାଙ୍କ ଖେଳ ମତ ପ୍ରକାଶ କଲେ । ଯେଉଁ ପ୍ରକାର ଶାସନରେ ଦୋଷୀକୁ ନିଜର ଯାହା କହିବାର କଥା ତା କହିବାକୁ ସୁବିଧା ଦିଆଯାଏ, ସେ ଶାସନରେ ନିର୍ଦ୍ଦୋଷକୁ ଦଣ୍ଡ ଦେବା ଯେ କେତେ କଷ୍ଟ ତାହା ସହଜରେ ଅନୁମେୟ । କିନ୍ତୁ ଏକଛତ୍ର ଶାସନରେ ଶାସକର ମର୍ଜି ଉପରେ ଜନସାଧାରଣଙ୍କର ଜୀବନ ଓ ଧନ ସମ୍ପତ୍ତି ନିର୍ଭର କରେ । ତେଣୁ ଆମମାନଙ୍କୁ ଏ ଦୁଇଟି ପନ୍ଥା ମଧ୍ୟରୁ କେଉଁଟି ଭଲ ତା ବାଛିନେବାକୁ ପଡ଼ିବ । ଭାରତରେ ଯେ କୌଣସି ପନ୍ଥାକୁ ମାନିନେବା ରାଜନୈତିକ ବିଚକ୍ଷଣତା ହେବ ନାହିଁ ।

---

# ସାମ୍ୟବାଦର ବିଚାରଧାରା

ସାମ୍ୟବାଦର ଇତିହାସ ଅତି ପୁରାତନ । ସାମ୍ୟବାଦର ଇତିହାସ ସହିତ କାର୍ଲମାର୍କସଙ୍କ ନାମ ଓତପ୍ରୋତ ଭାବରେ ଜଡ଼ିତ ହୋଇଥିଲେ ମଧ୍ୟ, ମାର୍କସଙ୍କ ବହୁତ ଆଗରୁ ସାମ୍ୟବାଦର କଳ୍ପନା ହୋଇଥିଲା । ଗ୍ରୀସ୍‌ର ଦାର୍ଶନିକ ପ୍ଲେଟୋ ତାଙ୍କର 'ଦ ରିପବ୍ଲିକ୍' ପୁସ୍ତକରେ କମ୍ୟୁନିଜିମର ଆଦର୍ଶ ଲୋକମାନଙ୍କ ଆଗରେ ଥୋଇଛନ୍ତି । ପ୍ଲେଟୋଙ୍କ ସମୟରେ ଗ୍ରୀସ୍‌ରେ ଅନ୍ୟାୟ ଓ ଅତ୍ୟାଚାର ପୂର୍ଣ୍ଣ ରହିଥିଲା । ପ୍ଲେଟୋଙ୍କ ଗୁରୁ ସକ୍ରେଟିସ୍‌ଙ୍କ ପରି ଉଦାର ଲୋକ ମଧ୍ୟ ଏହି ଅତ୍ୟାଚାରରୁ ରକ୍ଷା ପାଇଲେ ନାହିଁ । ପ୍ଲେଟୋ ଏଥିରେ ବ୍ୟସ୍ତ ହୋଇ ଏକ ନୂତନ ଆଦର୍ଶସମାଜର ଚିତ୍ର ତାଙ୍କର 'ଦ ରିପବ୍ଲିକ୍'ରେ ବାନ୍ଧିଲେ । କିନ୍ତୁ ପ୍ଲେଟୋଙ୍କ କମ୍ୟୁନିଜିମ୍ ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ନଥିଲା । ଯେଉଁମାନେ ଶାସନ କାର୍ଯ୍ୟ ଚଳାଇବେ, ସେହି-ମାନେ କେବଳ କମ୍ୟୁନିଜିମ୍‌ର ଆଦର୍ଶ ଗ୍ରହଣ କରିବେ । ପ୍ଲେଟୋଙ୍କ ମତରେ କମ୍ୟୁନିଜିମ୍ ଅର୍ଥ ତ୍ୟାଗ କଷ୍ଟକର ଜୀବନ । ଯେଉଁମାନେ ଶାସନ କାର୍ଯ୍ୟ ପରିଚାଳନା କରିବେ, ସେମାନେ ଧନ ସମ୍ପତ୍ତିର ମୋହରୁ ଦୂରରେ ନ ରହନ୍ତି ତାହେଲେ ଶାସନ କାର୍ଯ୍ୟ ସୁରୁଖୁରୁରେ ଚାଲିପାରିବ ନାହିଁ । ତେଣୁ ଶାସକମାନେ ସାମାଜିକ ବନ୍ଧନରୁ ମୁକ୍ତରେ ରହି ଶାସନ କାର୍ଯ୍ୟ ପରିଚାଳନା କରିବା ପାଇଁ ପ୍ଲେଟୋ ମତ ପ୍ରକାଶ କରିଥିଲେ । ବାଇବେଲ୍‌ର ଚର୍ଚ୍ଚରେ ଧର୍ମ ଯାଜକଙ୍କ ପରି ଏହି ଶାସକମାନେ ସେପରି ନିଃସ୍ୱାର୍ଥପର ଜୀବନ ଯାପନ କରନ୍ତି, ସେଥିପାଇଁ କମ୍ୟୁନିଜିମ୍‌ର ପ୍ରଚାର କରାଯାଇଥିଲା । ଏଥିରେ ସମାଜର ପ୍ରତ୍ୟେକ ଲୋକଙ୍କୁ ସମାନ ସୁବିଧା ଓ ସୁଯୋଗ ଦେବାର କୌଣସି

ପ୍ରଶ୍ନ କରନ୍ତି । ଉପରୋକ୍ତ ଥମାସ୍ ମୁରଙ୍କ ଲେଖାଗୁଡ଼ିକରେ ସାମ୍ୟବାଦର
ତାହା ପ୍ରଚାର କରାଯାଇଥିଲା ବୋଲି ମଧ୍ୟ କୁହାଯାଇ ପାରେ ।
ସାର ଥମାସ୍ ମୁର ତାଙ୍କର 'ୟୁଟୋପିଅ'ରେ ବ୍ୟକ୍ତିଗତ ସମ୍ପତ୍ତିର
ତୀବ୍ର ପ୍ରତିବାଦ କରିଥିଲେ । ସେହି ସମାଜରେ ବ୍ୟକ୍ତିଗତ ସ୍ୱାର୍ଥ ଓ
ଲୋଭ, ସେ ସମାଜରେ କୌଣସି ପ୍ରକାର ଉନ୍ନତି ହୋଇପାରିବ
ନାହିଁ ବୋଲି ସେ ଦୃଢ଼ ସ୍ୱରରେ ଘୋଷଣା କରିଥିଲେ । କେବଳ
ସେତିକି ନୁହେଁ—ବ୍ୟକ୍ତିଗତ ସମ୍ପତ୍ତି ଫଳରେ ଶାସନ ବ୍ୟବସ୍ଥାରେ
ମଧ୍ୟ ନ୍ୟାୟ ପ୍ରତିଷ୍ଠା ହୋଇପାରିବ ନାହିଁ ବୋଲି ତାଙ୍କର ମତ
ଥିଲା ।

ପ୍ଲେଟୋ ବା ସାର ଥମାସ ମୁର୍ ସାମ୍ୟବାଦର ସୂଚନା
ଦେଇଥିଲେ; କିନ୍ତୁ ପ୍ରକୃତରେ ସାମ୍ୟବାଦ ଫ୍ରାନ୍ସରୁ ଜନ୍ମଲାଭ
କରିଛି ବୋଲି କୁହାଯିବ । ଫରାସୀ ବିପ୍ଳବ ସମୟରେ ଫ୍ରାନ୍ସରେ
ସମାନତାର ବାୟୁମଣ୍ଡଳ ସୃଷ୍ଟି ହୋଇଥିଲା । ବିପ୍ଳବ ସଫଳ ହେଲା ।
କିନ୍ତୁ ବିପ୍ଳବର ଉଦ୍ଦେଶ୍ୟ ପୂରଣ ହେଲା ନାହିଁ । ପୂର୍ବରୁ ରାଜାମାନେ
ଯେଉଁ ଅତ୍ୟାଚାର ବା ଶୋଷଣ କରୁଥିଲେ, ବିପ୍ଳବ ପରେ ପୁଞ୍ଜିପତି
ମାନେ ସେହି ପନ୍ଥା ଅନୁସରଣ କଲେ । ଆଇନ ଅନୁସାରେ
ଅବଶ୍ୟ ସମସ୍ତେ ସମାନ ହେଲେ—କିନ୍ତୁ ଜନସାଧାରଣଙ୍କର ଆର୍ଥିକ
ଅବସ୍ଥାରେ କୌଣସି ପରିବର୍ତ୍ତନ ହେଲା ନାହିଁ । ଗାଁ ଗହଳର
କୃଷକ ଓ ସହରର ଶ୍ରମିକ ସମାଜର ସମସ୍ତ ବୋଝ ବୋହୁ
ଥିଲେ । କଳ କାରଖାନା ସାହାଯ୍ୟରେ ଉତ୍ପାଦନ ହେବା
ଫଳରେ ଅନେକ ଲୋକଙ୍କର ଅବସ୍ଥା ମଧ୍ୟ ଅଧିକ ଖରାପ ହେବାକୁ
ଲାଗିଲା । ଅନେକ ଆଦର୍ଶବାଦୀ ଏଥିରେ ହତାଶ ହୋଇ ପଡ଼ିଲେ ।
ଫଳରେ ବିପ୍ଳବୀ ପନ୍ଥା ଛାଡ଼ି ଗଠନମୂଳକ କାର୍ଯ୍ୟକ୍ରମରେ ଜଗତର
ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତା ହାସଲ ହୋଇପାରିବ, ସେଥିପାଇଁ

ଏକ କଳ୍ପନାଧାର ମୂର୍ତ୍ତ ହୋଇ ଉଠିଲା । ଆଦର୍ଶ ସାମ୍ୟବାଦୀ ମାନେ (utopian Socialists) ଏହି କଳ୍ପନାଧାରାର ଅଗ୍ରଣୀ ଥିଲେ ।

ଫ୍ରାନ୍ସର ସାଣ୍ଟସିମୋ (Saint Simon), ଚାର୍ଲସ ଫୁରିଏ (Charles Fourier), ଲୁଇ ବ୍ଲାଙ୍କ (Louis Blanc) ଓ ପ୍ରୁଧୋଁ (Proudhon) ଓ ଇଂଲଣ୍ଡର ରବର୍ଟ ଓଏନ (Robert Owen) ଏହି ଆଦର୍ଶ ସାମ୍ୟବାଦୀମାନଙ୍କ ଭିତରେ ପ୍ରଧାନ । ଏମାନଙ୍କ କଳ୍ପନାଧାରରେ ଅବଶ୍ୟ ଐକ୍ୟ ନଥିଲା । ଏମାନଙ୍କ ଭିତରୁ କେତେକଜଣ ସମାଜକୁ ପରିବର୍ତ୍ତିତ କରିବାପାଇଁ ସରକାରୀ ନିୟନ୍ତ୍ରଣ ଉପରେ ବିଶ୍ୱାସ କରୁଥିଲେ । ସରକାର ଯେ କେବଳ ଶିଳ୍ପର ପରିଚାଳନା କରିବେ ତା ନୁହେଁ, ବ୍ୟକ୍ତିଗତ ଜୀବନରେ ମଧ୍ୟ ହସ୍ତକ୍ଷେପ କରି ବ୍ୟକ୍ତିଗତ ମନୋବୃତ୍ତିକୁ ନିୟନ୍ତ୍ରଣ କରିପାରିବେ । ଅନ୍ୟ ପକ୍ଷରେ କେତେକଜଣ ଆଦର୍ଶ ସାମ୍ୟବାଦୀ ବ୍ୟକ୍ତିଗତ ସହଯୋଗ ଓ ସମବାୟ ସୂତ୍ରରେ ଭବିଷ୍ୟତ ସମାଜ ଗଠନ କରିବାର କଳ୍ପନା କରିଥିଲେ । ତଥାପି ଏମାନେ ସମସ୍ତେ ସମାଜକୁ ଶୋଷଣ ମୁକ୍ତ କରିବାପାଇଁ ପକ୍ଷପାତୀ ହୋଇଥିଲେ । ନିଜେ ଶ୍ରମ ନକରି ଅନ୍ୟ ଶ୍ରମ ଉପରେ ଶୋଷଣ କେହି କରି ନ ପାରନ୍ତୁ, ତାହାହିଁ ଏମାନଙ୍କର କାମନା ଥିଲା । ସେଥିପାଇଁ ଅର୍ଥ-ନୈତିକ କ୍ଷେତ୍ରରେ ସମସ୍ତଙ୍କୁ ସମାନ ରକମ ସୁବିଧା ସୁଯୋଗ ଦେବାରେ ମଧ୍ୟ ଏମାନେ ଚେଷ୍ଟିତ ଥିଲେ ।

ପ୍ରଥମେ ସାଣ୍ଟସିମୋଙ୍କର ସାମ୍ୟବାଦ ଆଲୋଚନା କରିଯାଉ । ସାଣ୍ଟସିମୋ ଖାଣ୍ଟି ସାମ୍ୟବାଦୀ ନଥିଲେ । କାରଣ ବ୍ୟକ୍ତିଗତ ସମ୍ପତ୍ତି ଲୋପ କରିବା ତାଙ୍କର ମତ ନଥିଲା । ତାଙ୍କର କଳ୍ପିତ ସମାଜରେ ଶିଳ୍ପ ପ୍ରତି ବେଶି ଜୋର ଦିଆ ଯାଇଥିଲା । ଶିଳ୍ପର ଉନ୍ନତିରେ ସମାଜର ଉନ୍ନତି ହେବ ବୋଲି ସେ ଆଶା ପୋଷଣ କରିଥିଲେ ।

ରାଜାର ଏକନିଷ୍ଠ ସଂସ୍ଥାରେ ପ୍ରତ୍ୟେକ ଲୋକ ନିଜର କାମ ଅନୁଯାୟୀ ମଜୁରି ପାଇବେ । ସେ ସମାଜରେ ଅର୍ଥନୈତିକ ସମତା ଆଣିବା ପାଇଁ ସ୍ପୃହଁ ନଥିଲେ । କିନ୍ତୁ ପ୍ରତ୍ୟେକ ଲୋକଙ୍କୁ ସମାନ ରକମ ସୁବିଧା ଓ ସୁଯୋଗ ଦେବାରେ ପକ୍ଷପାତୀ ଥିଲେ । ବିଶେଷତଃ ସମାଜରେ ଯେଉଁ ଲୋକ ଅଳସୁଆ ହୋଇ ସମାଜର ସୁବିଧା ଓ ସୁଯୋଗ ଉପଭୋଗ କରନ୍ତି, ସେଥିପାଇଁ ସେ ବିଶେଷ ଧ୍ୟାନ ଦେଇଥିଲେ । ସାଣ୍ଟସିମୋ ୧୭୬୦ ମସିହାରେ ପ୍ୟାରିସରେ ଜନ୍ମଗ୍ରହଣ କରିଥିଲେ ୧୯ ବର୍ଷ ବୟସରେ ସେ ଆମେରିକା ଯାଇ ଆମେରିକା ବିପ୍ଳବରେ ଭାଗ ନେଇ ସାମରିକ କୃତିତ୍ୱ ହାସଲ କରିଥିଲେ । ଆମେରିକାରୁ ଫେରି ଫରାସି ବିପ୍ଳବରେ ମଧ୍ୟ ବିପ୍ଳବୀମାନଙ୍କ ସହିତ ଯୋଗଦେଇ ଜେଲ ବରଣ କରିଥିଲେ । ତାଙ୍କ ଜୀବନ ଭିତରେ ସେ ଅନେକ ଅଭାବ ଓ ଅନଟନ ଭୋଗ କରିଥିଲେ । ତଥାପି ତାଙ୍କ ମନରେ ଅଦମ୍ୟ ଉତ୍ସାହ ଥିଲା । ମୃତ୍ୟୁ ଶଯ୍ୟାରେ ସେ ତାଙ୍କର ବନ୍ଧୁମାନଙ୍କୁ ନିବେଦନ କରି କହିଥିଲେ, "Remember that to accomplish grand deeds you must be enthusiastic" ପ୍ରତ୍ୟେକ ଲୋକ ନିଜର କାମ କରିବ, ଏହାହିଁ ସାଣ୍ଟସିମୋଙ୍କର ପ୍ରଧାନ ବାଣୀ ଥିଲା ।

କିନ୍ତୁ ସାଣ୍ଟସିମୋଙ୍କ ପରେ ତାଙ୍କର ଅନୁଚର ମାନେ ସାମ୍ୟବାଦର ଚିନ୍ତା ପ୍ରଚାର କଲେ । ବ୍ୟକ୍ତିଗତ ସମ୍ପତ୍ତିର ସମାଲୋଚନା କରି ସରକାରୀ ପରିଚାଳନା ସପକ୍ଷରେ ମତ ଦେଲେ । ସେମାନେ କହୁଥିଲେ ଯେ ପୁଞ୍ଜିପତିମାନେ ପୁଞ୍ଜିର ମାଲିକ ହୋଇଥିବାରୁ ଉତ୍ପାଦନ ନିୟନ୍ତ୍ରଣ କରି ଅଧିକ ରୋଜଗାର କରନ୍ତି । କିନ୍ତୁ ପୁଞ୍ଜି ସେମାନଙ୍କର ବ୍ୟକ୍ତିଗତ ଶ୍ରମର ଫଳ ନୁହେଁ—ଏହା ଶ୍ରମିକର ଶ୍ରମ ଶୋଷଣର ଫଳ । ଦ୍ୱିତୀୟରେ ପୁଞ୍ଜିପତିମାନେ ନିଜେ

ଯୋଜକାର କର ପୁଞ୍ଜି ସତ୍ତ୍ୱ କଳ୍ପନା ହାନ୍ତି । ଅଧିକାଂଶ କ୍ଷେତ୍ରରେ ଉତ୍ତରାଧିକାରୀ ସୂତ୍ରରେ ଏହା ପୂର୍ବପୁରୁଷମାନଙ୍କଠାରୁ ମିଳୁଛି । ତେଣୁ ଏଥିରେ ନିଜର କୌଣସି ଅଧିକାର ନାହିଁ । ଏହି ଦୃଷ୍ଟିରୁ ସାଣ୍ଟ୍ ସିମୋଙ୍କର ଅନୁଗାମୀମାନେ ବ୍ୟକ୍ତିଗତ ସମ୍ପତ୍ତିର ସମାଲୋଚନା କରି ଶିଳ୍ପର ଜାତୀୟକରଣ ପାଇଁ ପ୍ରସ୍ତାବ ଦେଇଥିଲେ । ସେମାନଙ୍କ ମତରେ ପ୍ରତ୍ୟେକ ଲୋକ ନିଜର ଶକ୍ତି ଅନୁଯାୟୀ କାମ କରିବ ଓ ନିଜର ଶ୍ରମ ଅନୁଯାୟୀ ମଜୁରି ପାଇବ । ଏମାନେ ଜନସାଧାରଣର ଦାବୀ ପ୍ରଥମେ ପ୍ରକାଶ କରିଥିଲେ । (Saint Simonism is the first expression of the Proletariat) । ଏମାନଙ୍କ ଆଦର୍ଶରେ ଅନେକ ସାମ୍ୟବାଦୀ ପ୍ରଭାବିତ ହୋଇଥିଲେ ବୋଲି ନିଶ୍ଚିତରୂପେ କୁହାଯାଇପାରେ ।

ସାଣ୍ଟ୍ ସିମୋଙ୍କ ସମସାମୟିକ ଫୁରିଏ ମଧ୍ୟ ସାମ୍ୟବାଦ ପ୍ରଚାର କରିଥିଲେ । ଅନେକ ଏହାଙ୍କର ଆଦର୍ଶକୁ ବୁର୍ଜୁଆ ସାମ୍ୟବାଦ ବୋଲି କହନ୍ତି । କାରଣ ଫୁରିଏ ବ୍ୟକ୍ତିଗତ ସମ୍ପତ୍ତି ଓ ଉତ୍ତରାଧିକାରୀ ସୂତ୍ରରେ ବିଶ୍ୱାସ କରିଥିଲେ । ତାଙ୍କର ବଣ୍ଟନ ପ୍ରଣାଳୀରେ ଶ୍ରମିକ, ପୁଞ୍ଜିପତି ଓ ବ୍ୟବସାୟୀ ମାନଙ୍କ ଭିତରେ ବେଶୀ କିଛି ତଫାତ ନଥିଲା ବୋଲି ମଧ୍ୟ କୁହାଯାଇପାରେ । ତଥାପି ତାଙ୍କର ଆଦର୍ଶରେ ସହଯୋଗମୂଳକ ସାମ୍ୟବାଦ ଅଛି ବୋଲି କୁହାଯିବ । ସେ ଏକ ହୋଟେଲ ଜୀବନର ନମୁନା ଲୋକମାନଙ୍କ ଆଗରେ ଥୋଇଥିଲେ । ଗୋଟିଏ ହୋଟେଲରେ ପ୍ରାୟ ୧୫୦୦ ଲୋକ ରହୁଥିବେ । ଏମାନେ କୋଅପରେ ଚଳିବେ । ଏକତ୍ରଭାବ ଭୋଜନ ଖାଇବେ । ଏକାଠି ସମସ୍ତେ ରହି ଏକପ୍ରକାର ଜୀବନ ପ୍ରଣାଳୀ ଗ୍ରହଣ କଲେ ପରସ୍ପର ପ୍ରତି ଶ୍ରଦ୍ଧା ଓ ସ୍ନେହ ଆସିବ ବୋଲି ତାଙ୍କର ଧାରଣା ଥିଲା । ହୋଟେଲର ବାସିନ୍ଦାମାନେ ମଧ୍ୟ ଭାବଗତ

ଦରକାର କମନସ ଉତ୍ପାଦନ କରିବେ । ପ୍ରତ୍ୟେକ ହୋଲଡିଙ୍ଗର ୫୦୦ ଏକର ପର୍ଯ୍ୟନ୍ତ ଜମି ରହିବ । ଏହି ଜମିରେ ପ୍ରତ୍ୟେକ ହୋଲ୍ଡର ବାସିନ୍ଦାର ଅଧିକାର ରହିବ । ଶ୍ରେଣୀ ଓ ଶ୍ରେଣୀ ଭିତରେ ସଂଘର୍ଷ ସୃଷ୍ଟି କରି ପୁଞ୍ଜିବାଦ ଲୋପ କରିବାକୁ ସେ ରାଜି ନଥିଲେ । ଯେଉଁମାନେ ନିଜର ଶ୍ରମ ବଳ ମଣିଷ ଅର୍ଥ ଜୀବିକା ଅର୍ଜନ କରୁଛନ୍ତି, ସେମାନଙ୍କୁ ଅନ୍ୟମାନଙ୍କ ଏବଂ ସମଭାବରେ ମାଲିକ କରିଦେଲେ ପୁଞ୍ଜିବାଦର ଅପଚୟ ଓ ଦୁର୍ବଳତା ଦୂର ହୋଇଯାଇବ ବୋଲି ସେ ମତ ଦେଇଥିଲେ । ଏଥିପାଇଁ ସେ ସମବାୟ ହୋଲ୍ଡିଂର ନମୁନା ବାଛିଥିଲେ ।

ମୂଳତଃ ସେ ତାଙ୍କ ଯୋଜନାରେ କୃଷିକୁ ବେଶୀ ଜୋର ଦେଇଥିଲେ । କେତେକ ନିତାନ୍ତ ଦରକାରୀ, ତାହାଠାରୁ ଅଧିକ ଶିଳ୍ପର ପ୍ରସାର କରିବାକୁ ସେ ପସନ୍ଦ କରୁନଥିଲେ । ତାଙ୍କ ସମୟରେ ଶିଳ୍ପ ବିପ୍ଳବ ଯୋଗୁଁ ଶ୍ରମିକମାନଙ୍କର ଅବସ୍ଥା ଅତ୍ୟନ୍ତ ଖରାପ ହୋଇ ଯାଇଥିଲା । ମଫସଲରୁ ଶ୍ରମିକମାନେ ସହରକୁ ଆସି ଅତି ଦୁଃଖ କଷ୍ଟରେ ଜୀବନ କଟାଉଥିଲେ । ତେଣୁ ବଡ଼ ବଡ଼ ସହର ସଂଖ୍ୟା କମାଇ ଛୋଟ ଛୋଟ ଗାଁମାନଙ୍କରେ ଶ୍ରମିକମାନଙ୍କୁ ଭାଗ କରିଦେବା ପାଇଁ ମଧ୍ୟ ସେ ଜୋର ପ୍ରସ୍ତାବ ଦେଇଥିଲେ । ଶ୍ରମିକମାନଙ୍କ ଅବସ୍ଥା ଉନ୍ନତ କରି ସେମାନଙ୍କ ଚରିତ୍ରକୁ ସୁନ୍ଦର କରିବାହିଁ ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା ।

ଲୁଇ ବ୍ଲାଙ୍କ ଆଦର୍ଶ ସାମ୍ୟବାଦୀ ଦଳର ନହେଲେ ବି ତାଙ୍କୁ ଆଦର୍ଶ ସାମ୍ୟବାଦୀ ବୋଲି ଧରି ନିଆଯାଇଛି । କିନ୍ତୁ ପ୍ରକୃତରେ ସେ ଆଦର୍ଶ ସାମ୍ୟବାଦ ଓ ମାର୍କ୍ସବାଦର ଏକ ସଂଯୋଗ । ୧୮୪୮ ଅସ୍ଥାୟୀ ସରକାରରେ ସେ ଜଣେ ପ୍ରସିଦ୍ଧ ସଭ୍ୟ ଥାଇ ଶ୍ରମିକମାନଙ୍କର ଦାବି ପୂରଣ କରିବା ପାଇଁ [illegible] ଚେଷ୍ଟା କରିଥିଲେ ।

ତାଙ୍କ ଜୀବଦ୍ଦଶାରେ ବେଶୀ କିଛି ନୂତନତ୍ୱ ନାହିଁ ବୋଲି ଅନେକ କହନ୍ତି । ତଥାପି ଶିଳ୍ପଗତ ଓ ସାମାଜିକ ପୁନର୍ଗଠନ ଭିତରେ ସହଯୋଗ ଦରକାର ବୋଲି ସେ ପ୍ରଥମେ ସୂଚନା ଦେଇଥିଲେ ବୋଲି କୁହାଯାଏ । ବ୍ୟକ୍ତିତ୍ୱର ବିକାଶ ସମାଜର ପ୍ରଧାନ ଲକ୍ଷ୍ୟ ହେବା ଉଚିତ ବୋଲି ସେ ମନେ କରୁଥିଲେ । ବ୍ୟକ୍ତିର ସୁଖ ସମୃଦ୍ଧିରେ ସମାଜ ପରିପୂର୍ଣ୍ଣ ବୋଲି ତାଙ୍କର ଧାରଣା ଥିଲା । ସେଥିପାଇଁ ସେ ପ୍ରତିଯୋଗିତାର ତୀବ୍ର ସମାଲୋଚନା କରିଥିଲେ । କାରଣ ପ୍ରତିଯୋଗିତା ଫଳରେ ସର୍ବହରାମାନଙ୍କର ଯେ ଖାଲି ଦାରିଦ୍ର୍ୟ ବଢ଼ୁଛି ତା ନୁହେଁ, ଅନେକ ସମୟରେ ସେମାନେ ସମୂଳେ ଲୋପ ପାଇ ଯାଉଛନ୍ତି । ତେଣୁ ପ୍ରତିଯୋଗିତା ବଦଳରେ ସହ-ଯୋଗ ପନ୍ଥା ଗ୍ରହଣ କରିବାକୁ ସେ ପ୍ରଚାରଣ କରିଥିଲେ । ଦ୍ୱିତୀୟତ ଯେଉଁମାନେ ଅନ୍ୟ ଭାବରେ କାମ ପାଉନାହାନ୍ତି, ସେମାନଙ୍କୁ ସରକାର କାମ ଯୋଗାନ୍ତୁ (Right to work) ବୋଲି ସେ ଦାବି କରିଥିଲେ । ସେ ଯେତେବେଳେ ଅସ୍ଥାୟୀ ସରକାରର ଏକ ସଭ୍ୟ ଥିଲେ, ସେତେବେଳେ ଏହି ଦାବୀ ପୂରଣ ପାଇଁ ଏକ ଶ୍ରମିକ ଓ ଉନ୍ନତି ବିଭାଗ ଖୋଲିବାକୁ ମତ ଦେଇଥିଲେ । ଶହେ ବର୍ଷ ପରେ ଆଜି ମଧ୍ୟ ଏ ଦାବୀ ମୃଦୁଭାବେ ସଭାସମିତିରେ ଉପସ୍ଥାପିତ କରାଯାଉଛି । ଜାତୀୟରେ ଶ୍ରମିକମାନେ ମିଳିମିଶି ଉତ୍ପାଦନ (Peoples workshops) କରନ୍ତୁ ବୋଲି ତାଙ୍କର ମତ ଥିଲା । ଏହା ଫଳରେ ବେକାର ସମସ୍ୟା ଦୂର ହୋଇଯିବ ଓ ପୁଞ୍ଜି-ବାଦର ଶୋଷଣ ଲୋପ ହୋଇପାରିବ ବୋଲି ସେ ମନେ କରୁଥିଲେ । ଶ୍ରମିକମାନଙ୍କର ସହଯୋଗମୂଳକ ଉତ୍ପାଦନ ପ୍ରଣାଳୀ ପାଇଁ ଯାହା ପୁଞ୍ଜି ଦରକାର, ତାହା ସରକାର ଯୋଗାଇବା ଉଚିତ ବୋଲି ସେ ମତ ପ୍ରକାଶ କରିଥିଲେ । ଫୁରିଏ ଓ ବ୍ଲାଁ

ଓଏନେ କେବଳ ସମବାୟ ସଂଗଠନ ଉପରେ ଜୋର ଦେଉଥିଲେ । ସରକାରୀ ନିୟନ୍ତ୍ରଣ ପକ୍ଷରେ ସେମାନଙ୍କର ମତ ଥିଲା ବୋଲି କୁହାଯାଇ ନପାରେ । ସାଁସିମୋ ସରକାରୀ ନିୟନ୍ତ୍ରଣ ସପକ୍ଷରେ ମତ ପ୍ରକାଶ କରିଥିଲେ । ତେଣୁ ଲୁଇବ୍ଲାଙ୍କ ସରକାରୀ ସାହାଯ୍ୟରେ ସମବାୟ ଉତ୍ପାଦନ ପ୍ରଣାଳୀ ଗଠନ କରିବା ସପକ୍ଷରେ ପ୍ରଥମ ବୋଲି କୁହାଯିବ । ଆଉ ଗୋଟିଏ କଥା । ଧନ ଭଳି ଲୋକ-ମାନଙ୍କର ପ୍ରତିଭାରେ ତାରତମ୍ୟ ଅଛି ବୋଲି ଲୁଇବ୍ଲାଙ୍କ ବିଶ୍ୱାସ କରିଥିଲେ । ତେଣୁ ଏହି ଶକ୍ତିର ସମ୍ୟକ୍ ବ୍ୟବହାର ପାଇଁ ପ୍ରତ୍ୟେକ ଲୋକ ନିଜର ଶକ୍ତି ଅନୁଯାୟୀ କାମ କରିବା ଉଚିତ ବୋଲି ସେ ମତ ପ୍ରକାଶ କରିଥିଲେ । ପ୍ରତିଭାର ତାରତମ୍ୟ ଅଛି ବୋଲି ପ୍ରତିଭାବାନ୍ ଲୋକ ନିଜ ସୁବିଧା ପାଇଁ ନିଜର ବୁଦ୍ଧି ବୃତ୍ତି ବ୍ୟବହାର କରିବା ଉଚିତ ନୁହେଁ । ପ୍ରତ୍ୟେକ ଲୋକର ସମାଜ ପ୍ରତି ମଧ୍ୟ କିଛି ଦାୟିତ୍ୱ ଅଛି । ତେଣୁ ପ୍ରତ୍ୟେକ ଲୋକ ନିଜର ଶକ୍ତି ଅନୁଯାୟୀ କାମ କଲେ ମଧ୍ୟ ନିଜର ଆବଶ୍ୟକ ଅନୁଯାୟୀ ପାରିତୋଷିକ ପାଇବା ଉଚିତ ବୋଲି ଲୁଇ ବ୍ଲାଙ୍କ ଘୋଷଣା କରିଥିଲେ । (From each according to his ability to each according to his needs) । ସାଁ ସିମୋଙ୍କ ଅନୁଗାମୀମାନେ ଶ୍ରମ ଅନୁଯାୟୀ ମଜୁରି ଦେବା ପକ୍ଷପାତୀ ଥିଲେ । ପୁଣି ସବୁ ଶ୍ରେଣୀ ଭିତରେ ଏକ ନିୟମ ଅନୁଯାୟୀ ବଣ୍ଟନ କରିବା ପାଇଁ ଏମାନେ ମତ ବଖାଣ କରିଥିଲେ । ତେଣୁ ପ୍ରଥମ ଥର ପାଇଁ ସାମ୍ୟବାଦ ଆଦର୍ଶ ଲୁଇ ବ୍ଲାଙ୍କଙ୍କଠାରୁ ଆରମ୍ଭ ହେଲା ବୋଲି କୁହାଯିବ ।

ପ୍ରୁଧୋଁ ମଧ୍ୟ ଏହି ସାମ୍ୟବାଦୀ ଦଳର ଆଉ ଜଣେ ଏକ କର୍ଣ୍ଣଧାର । ସେ ୧୮୦୯ ଖ୍ରୀଷ୍ଟାବ୍ଦରେ ଫ୍ରାଁସକୋଣ ଜିଲ୍ଲା ସ୍ଥାନରେ

ଜନ୍ମ ଗ୍ରହଣ କରିଥିଲେ । ତାଙ୍କର କିଛି ଅସବାବ ନ ଥିବା । ତେଣୁ
ଗୋରୁ ଚରାଇ, ହୋଟେଲରେ ବାସନ ମାଜି ସେ ଜୀବିକା ଅର୍ଜନ
କରୁଥିଲେ । ତାଙ୍କ ବିଷୟରେ ଶୁଣା ଅଛି ଯେ ସେ ଜଣେ ଭଲ
ଛାତ୍ର ଥିବାରୁ ସ୍କୁଲରୁ ବହୁତ ପୁରସ୍କାର ପାଉଥିଲେ । କିନ୍ତୁ ଏହି
ସବୁ ପୁରସ୍କାର ଧରି ଘରକୁ ଫେରିଲା ବେଳକୁ, ଘରେ ତାଙ୍କ
ପାଇଁ ଗଣ୍ଡେ ଖାଇବାକୁ ନ ଥିଲା । ସେ ୧୮୪୦ ଖ୍ରୀଷ୍ଟାବ୍ଦରେ
'ସମ୍ପତ୍ତି କଣ' ନାମକ ଏକ ପ୍ରସିଦ୍ଧ ପୁସ୍ତକ ପ୍ରକାଶ କରିଥିଲେ ।
ଏଥିରେ ସେ କହିଥିଲେ ଯେ ସମ୍ପତ୍ତି ହେଉଛି ଚୋରି [Property
is theft ] । ସେଥିପାଇଁ ସେ ବ୍ୟକ୍ତିଗତ ସମ୍ପତ୍ତିର ତୀବ୍ର
ନିନ୍ଦା କରିଥିଲେ । ତେବେ ଏ କଥା କୁହାଯିବ ଯେ ସେ
ବ୍ୟକ୍ତିଗତ ସମ୍ପତ୍ତିର ବିରୋଧୀ ନଥିଲେ । ବ୍ୟକ୍ତିଗତ ସମ୍ପତ୍ତିର
ଅପବ୍ୟବହାରକୁ ନିନ୍ଦା କରିଥିଲେ । ଜଣେ ଯେତେ ସମ୍ପତ୍ତି
ନିଜେ ଅର୍ଜିବ, ସେତିକି ରଖି ପାରିବ । କିନ୍ତୁ ତାଠାରୁ ଅଧିକ
ନୁହେଁ । ପିତା ମାତାଙ୍କ ସମ୍ପତ୍ତିରେ ସନ୍ତାନର ଅଧିକାର ରହିବ
ନାହିଁ । ଜଣେ ଯେତିକି ଜମି ଚାଷ କରିପାରିବ, ସେ ସେତିକି
ଜମିର ମାଲିକ ହେବ । ଏହା ଯେତେବେଳେ ଅନେ ସ୍ୱତ୍ୱକୁ ଲୋ
ଲଗାଇ ଯାଇ, ଜମି ଚାଷ, ଅନେ ଅଣ୍ଡର୍ଶ ହୋଇ ଯାଉଛି । ଏକ
ନୂଆ ତନ୍ତ୍ରାଧୀଶ ବୋଲି ମନ୍ତବ୍ୟ ପ୍ରକାଶ କରୁଛନ୍ତି । କିନ୍ତୁ ବହୁତ
ଆଗରୁ ପ୍ରୁଧୋଁ ସେ କଥା କହିଛନ୍ତି । ପ୍ରୁଧୋଁଙ୍କ ମତରେ
ବ୍ୟକ୍ତିଗତ ସମ୍ପତ୍ତି ରହିପାରେ, କିନ୍ତୁ ବ୍ୟକ୍ତିଗତ ସମ୍ପତ୍ତି ଦ୍ୱାରା
ଶୋଷଣ ହୋଇ ପାରିବ ନାହିଁ । ସାମ୍ୟବାଦ ଓ ପୁଞ୍ଜିବାଦର
ମେଳ ହେବ । ବ୍ରିଟିଶ୍ ସେ ମଧ୍ୟ ସରକାରୀ ଶାସନର ବିରୋଧ
କରିଥିଲେ । ସରକାରୀ କ୍ଷମତାର ଅପବ୍ୟବହାର ଫଳରେ ଦେଶରେ
ଅରାଜକତା ବୃଦ୍ଧି ପାଉଛି ବୋଲି ମତ ପ୍ରକାଶ କରିଥିଲେ । ତେଣୁ

ତାଙ୍କୁ ଅନେକ ଦାର୍ଶନିକ ଗଣତନ୍ତ୍ରବିରୋଧୀ [ Philosophical anarchist ] ବୋଲି ଆଖ୍ୟା ଦେଇଥାନ୍ତି । ତେବେ ସେ ସମ୍ପୂର୍ଣ୍ଣ ଭାବରେ ସରକାରଙ୍କ କ୍ଷମତା ଲୋପ କରିବାକୁ ଚାହୁଁ ନ ଥିଲେ । ତେବେ ସରକାରଙ୍କ କ୍ଷମତା ନିୟନ୍ତ୍ରଣ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । କମ୍ୟୁନିଷ୍ଟମାନେ ସରକାରଙ୍କ କ୍ଷମତା ବଢ଼ାଇବାକୁ ଚାହୁଁଥିବାରୁ ସେ ସେମାନଙ୍କର ସମାଲୋଚନା କରିଥିଲେ । କମ୍ୟୁନିଜମ ଫଳରେ ପରାଧୀନତା ବଢ଼ିବ ଓ ଦୁର୍ବଳ ଲୋକମାନେ ସବଳ ଲୋକମାନଙ୍କ ଉପରେ ଅତ୍ୟାଚାର କରିବେ ବୋଲି ସେ ମତ ଦେଇଥିଲେ । ସେ ସମାଜକୁ ଅତ୍ୟାଚାର ଓ ଅନ୍ୟାୟରୁ ଦୂର କରିବା ପାଇଁ କ୍ଷୁଦ୍ର କ୍ଷୁଦ୍ର ଶିଳ୍ପ ଓ କୃଷିର ପ୍ରସାର କରିବାକୁ ଚାହୁଁଥିଲେ । ଯଦି ସମ୍ପତ୍ତି ଛୋଟ ଛୋଟ ଲୋକମାନଙ୍କ ହାତରେ ରହିଯାଏ ଓ ଛୋଟ ଛୋଟ ଉତ୍ପାଦନକାରୀମାନେ ଶିଳ୍ପ ଓ କୃଷିର ପରିଚାଳନା କରନ୍ତି, ତା ହେଲେ ଶୋଷଣର ଅବକାଶ ରହିବ ନାହିଁ । କ୍ଷୁଦ୍ର କ୍ଷୁଦ୍ର ଉତ୍ପାଦନକାରୀମାନଙ୍କର ସହଯୋଗରେ [ Small-Producers' Commonwealth] ସମାଜ ଗଠନ କରିବା ତାଙ୍କର ଆଦର୍ଶ ଥିଲା । ଏଥିପାଇଁ ସ୍ୱତନ୍ତ୍ର ବ୍ୟାଙ୍କ ପ୍ରତିଷ୍ଠା କରି ବିନା ସୁଧରେ ଉତ୍ପାଦନକାରୀମାନଙ୍କୁ ଧାର ଦେବାକୁ ସେ ଚାହୁଁଥିଲେ । ସୁଧ ଶୋଷଣ ବୃଦ୍ଧି କରେ ବୋଲି ସେ କହୁଥିଲେ । ଟଙ୍କା ପଇସା ଦ୍ୱାରା ଜିନିଷପତ୍ର ବିନିମୟ ହେବା କଥା—ତେଣୁ ଟଙ୍କା ଖଟାଇ ସୁଧ ଆଦାୟ କରିବା ଅନ୍ୟାୟ । ପ୍ରକୃତରେ ସାମ୍ୟବାଦ ଇତିହାସରେ ପ୍ରୁଧୋ'ଙ୍କ ଦାନ ଅତି ଉଜ୍ଜ୍ୱଳ । ସେ ଅଭାବ ଓ ଅନଟନ ଭିତରେ ଜୀବନ କଟାଇ ଥିଲେ । କିନ୍ତୁ ଜୀବନର ସରଳତା ତାଙ୍କର ପ୍ରତିଭାକୁ ଉଜ୍ଜ୍ୱଳ କରିଥିଲା । ଅଭାବ ଓ ଅନଟନ ତାଙ୍କର ଉତ୍ସାହକୁ ଦବେଇ ଦେଇ ପାରି ନ ଥିଲା ।

ଇଂଲଣ୍ଡର ରବର୍ଟ ଓଏନ ନିଜର ଚିନ୍ତାଧାରାକୁ କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା କରିଥିଲେ । ସେ ନିଜେ ଜଣେ ଶିଳ୍ପପତି ଥିଲେ । ଏହି ଶିଳ୍ପରେ ସେ ତାଙ୍କର ସାମ୍ୟବାଦୀ ଚିନ୍ତାଧାରାର ପରୀକ୍ଷା କରିଥିଲେ । ସେତେବେଳେ ଇଂଲଣ୍ଡରେ ଶ୍ରମିକମାନେ ଦିନକୁ ୧୭ । ୧୮ ଘଣ୍ଟା ଖଟୁଥିଲେ । ଓଏନ୍ ଏହାକୁ କମେଇ ୧୦ ଘଣ୍ଟା କଲେ । ପିଲାମାନଙ୍କୁ ମଧ୍ୟ କଳକାରଖାନାରେ ଖଟା ଯାଉଥିଲା । ଓଏନ ପିଲାମାନଙ୍କୁ କାମରେ ନ ଲଗାଇ, ସେମାନଙ୍କ ପାଇଁ ସ୍କୁଲ ପ୍ରତିଷ୍ଠା କରି ବିନା ବେତନରେ ଶିକ୍ଷାର ବ୍ୟବସ୍ଥା କଲେ । ଶ୍ରମିକମାନଙ୍କୁ କାରଣ ଅକାରଣରେ ଜୋରିମାନା ଦିଆଯାଉଥିଲା—ସେ ଜୋରିମାନାକୁ ବନ୍ଦ କଲେ । ଶ୍ରମିକମାନଙ୍କ ପାଇଁ ଭଲ ଘର ତିଆରି କଲେ, ଅଧିକ ମଜୁରି ଦେଲେ । ଶ୍ରମିକମାନଙ୍କୁ ମଧ୍ୟ ଶିଳ୍ପର ପରିଚାଳନାରେ ଓ ଲାଭରେ ଭାଗ ଦେଲେ । ଶିଳ୍ପପତି ପକ୍ଷରେ ଲାଭ ନେବା ଅନ୍ୟାୟ ବୋଲି ସେ ବିଶ୍ୱାସ କରୁଥିଲେ । ଏହି ଫଳରେ ଶ୍ରମିକମାନେ ଯାହା ଉତ୍ପାଦନ କରୁଛନ୍ତି ତାହା ପାଇ ପାରୁ ନାହାନ୍ତି । ପ୍ରତିଯୋଗିତା ଏହି ଲାଭକୁ ଦୂର କରି ପାରୁ ନାହିଁ । ତେଣୁ ଲାଭକୁ ଦୂରକରିବା ପାଇଁ ସେ ଉତ୍ପାଦନକାରୀ ସମବାୟ ଅନୁଷ୍ଠାନ ଗଠନ କରିବାକୁ ଚେଷ୍ଟା କରିଥିଲେ । ବ୍ୟକ୍ତିଗତ ପ୍ରଚେଷ୍ଟା ବା ସରକାରୀ ଆଇନ ଦ୍ୱାରା ସମାଜ ବଦଳିବା ସହଜ ନୁହେଁ ବୋଲି ଭାବି ସମବାୟ ଅନୁଷ୍ଠାନ ଉପରେ ନିର୍ଭର କରିଥିଲେ । ମୁଦ୍ରାର ପ୍ରଚଳନ ଫଳରେ ଶୋଷଣ ବଢ଼ୁଛି ଓ ଲାଭ ହେଉଛି ବୋଲି ସେ ଏକପ୍ରକାର ଶ୍ରମିକ ନୋଟ୍ ପ୍ରଚଳନ କରିବାରେ ଉଦ୍ୟମ କରିଥିଲେ । ଶ୍ରମିକ ଉତ୍ପାଦନ କରୁଛନ୍ତି । ତେଣୁ ଜିନିଷର ଦରଦାମ ଶ୍ରମିକର ଶ୍ରମ ଅନୁସାରେ ସ୍ଥିର ହେବା ଉଚିତ । ଶ୍ରମିକ-ନୋଟ୍ ଏହି କାର୍ଯ୍ୟ ସାଧନ କରିବ ଓ ଏହା । ସେ ଉତ୍ପାଦନକାରୀ ତଥା ଉତ୍ପାଦନ ଜିନିଷ ବିକ୍ରି କରିବାକୁ

ଘୁଞ୍ଚିବ, ତାହେଲେ ସେ ଯେତେ ଘଣ୍ଟା ଖଟି ଉତ୍ପାଦନ କରନ୍ତି, ସେତିକି ଘଣ୍ଟା ଅନୁସାରେ ଶ୍ରମ-ନୋଟ୍ ପାଇବ । ଯେଉଁ ଖାଉଟି ଏ ଜିନିଷ କିଣିବ, ସେ ମଧ୍ୟ ସେତିକି ଶ୍ରମ-ନୋଟ ଦେବ । ତାହେଲେ ଅଳ୍ପ ଲାଭ ରହିବ ନାହିଁ । ସେଥିପାଇଁ ସେ ଲଣ୍ଡନରେ ଏକ ଅନୁଷ୍ଠାନ (National Equitable Labour Exchange ) ପ୍ରତିଷ୍ଠା କରିଥିଲେ । ଏହି ଅନୁଷ୍ଠାନ ସଫଳ ହୋଇ ନଥିଲା । କିନ୍ତୁ ଓଏନ୍ ଯେ ସମବାୟ ସମିତି ପ୍ରତିଷ୍ଠା କରିବା ପାଇଁ ପ୍ରଥମେ ଉଦ୍ୟମ କରିଥିଲେ, ତାହା ଇତିହାସରେ ଲେଖା ହୋଇ ରହିଛି । ରୁଷିଆରେ କମ୍ୟୁନିଷ୍ଟ ସରକାର ପ୍ରତିଷ୍ଠା ହେଲା ପରେ ମୁଦ୍ରା ଉଠାଇ ଶ୍ରମ-କୁପନ ଦ୍ୱାରା ଦ୍ରବ୍ୟ କାରବାର ଠିକ୍ କରାଯାଉଥିଲା ବୋଲି ଶୁଣାଯାଏ । ସେମାନେ ଓଏନଙ୍କ ସିଦ୍ଧାନ୍ତରେ ଅନୁପ୍ରାଣିତ ହୋଇ ଏହା କରିଥିବେ ବୋଲି ବିଶ୍ୱାସ କଲେ, କିଛି ଭୁଲ ହେବ ନାହିଁ । ଆଜି ଦେଶର କମ୍ୟୁନିଷ୍ଟମାନେ ପରିସ୍ଥିତିକୁ ପୂଜା କରୁଛନ୍ତି, ଓଏନ ମଧ୍ୟ ପରିସ୍ଥିତିକୁ ପୂଜା କରୁଥିଲେ । ପରିସ୍ଥିତି ବଦଳାଇଲେ, ମନୁଷ୍ୟ ବଦଳିଯିବ ବୋଲି ଓଏନ ମଧ୍ୟ ମତପ୍ରକାଶ କରିଥିଲେ । ତେଣୁ ଓଏନଙ୍କୁ କମ୍ୟୁନିଷ୍ଟମାନଙ୍କର ଜଣେ ଗୁରୁ ବୋଲି ନିଶ୍ଚିନ୍ତରେ କୁହାଯାଇ ପାରେ ।

ସମଷ୍ଟି ଉପରେ ଏତିକି କୁହାଯିବ ଯେ ଆଦର୍ଶ ସାମ୍ୟବାଦୀମାନେ ସମାଜକୁ ସଂସ୍କାର କରିବାକୁ ଚାହିଁଥିଲେ । କିନ୍ତୁ ଏହି ସଂସ୍କାର ବିପ୍ଳବ ଦ୍ୱାରା ନୁହେଁ, ବଦଳରେ ସଦ୍ଭାବରେ ଆସିବ । ଜନସାଧାରଣଙ୍କ ସହଯୋଗ ନେଇ ଏକ ଆଦର୍ଶ ସମାଜ ଗଢ଼ାଯିବ— ଯେଉଁଥିରେ କି ଅତ୍ୟାଚାର ନ ଥିବ, ଦାରିଦ୍ର୍ୟ ନ ଥିବ, ପୁଞ୍ଜିପତିମାନେ ଲାଭ କରୁ ନ ଥିବେ କି ଅନାଥମାନେ ଭିକ ମାଗୁ ନ ଥିବେ । ସେମାନେ ଶିକ୍ଷା ଦ୍ୱାରା ମନୁଷ୍ୟଙ୍କୁ ପରିବର୍ତ୍ତନ କରିବାକୁ ଚାହିଁ

ଥିଲେ । ମନୁଷ୍ୟର ବୁଦ୍ଧି ଓ ବିବେକ ଉପରେ ସେମାନଙ୍କର ବିଶ୍ୱାସ ଥିଲା । ଏହି ବୁଦ୍ଧି ଓ ବିବେକକୁ ନିବେଦନ କରି, ତେଣେତେ ଫେଞ୍ଚରେ ସଂସ୍କାର କର୍ମର ସାହାଯ୍ୟ ନେଇ ସେ ନ୍ୟାୟପୂର୍ଣ୍ଣ ଓ ଯଥାର୍ଥ ସମାଜ ପ୍ରତିଷ୍ଠା କରିବାକୁ ଉଦ୍ୟମ କରିଥିଲେ । ଚାର୍ଲ୍ସ ମଣ୍ଟେସ୍କିଉଙ୍କ ଅବଦାନ ପରେ ଏମାନଙ୍କର ପତନ ହୋଇଥିଲେ ମଧ୍ୟ, ଅନେକ ପୁଣି କେବେ ଏହି ବୁଦ୍ଧିଜୀବୀମାନଙ୍କ ପ୍ରେରଣା ପାଇଁ ମୃତ୍ୟୁ ଛନ୍ତି । ଇତିହାସର ସ୍ଥାନ ଅତି ଗୁରୁତ୍ୱ ।

---

# କାର୍ଲ ମାର୍କ୍ସ

ରାଜନୀତି କ୍ଷେତ୍ରରେ ମାର୍କ୍ସଙ୍କ ପ୍ରଭାବ ଅତୁଳନୀୟ । ଯେଉଁମାନେ ମାର୍କ୍ସଙ୍କ ବହି ପଢ଼ିନାହାନ୍ତି ସେମାନେ ମଧ୍ୟ ମାର୍କ୍ସଙ୍କ ଲେଖାକୁ ପ୍ରଶଂସା କରୁଛନ୍ତି । ନିଜକୁ ମାର୍କ୍ସବାଦୀ କହି ଗୌରବ ଅନୁଭବ କରୁଛନ୍ତି । ମାର୍କ୍ସଙ୍କ ନାଁରେ ବିପ୍ଳବ ହେଉଛି, ସମାଜ ବଦଳୁଛି, ଅର୍ଥନୀତି ବଦଳୁଛି । ମାର୍କ୍ସ ଇତିହାସର ହୋଇ ବି ଇତିହାସ ଗଢ଼ୁଛନ୍ତି । ତାଙ୍କର ରାଜନୀତି ଓ ଦର୍ଶନ ପାଠ୍ୟ ପୁସ୍ତକ ଭିତରେ ଆବଦ୍ଧ ନରହି ପ୍ରତ୍ୟକ୍ଷ ଭାବେ କ୍ଷେତ୍ରରେ ପ୍ରୟୋଗ କରାଯାଉଛି । ଏପରି ଜଣେ ଲୋକ ପୃଥିବୀରେ ଏପର୍ଯ୍ୟନ୍ତ ଜନ୍ମ ହୋଇଛନ୍ତି—କି ନାହିଁ ସନ୍ଦେହ । କିନ୍ତୁ ମତବାଦର ସଫଳତା ଦୃଷ୍ଟିରୁ ଯଦି ବିଚାର କରାଯାଏ, ମାର୍କ୍ସ ବୋଧହୁଏ ପ୍ରଥମ ସ୍ଥାନ ପାଇବେ । ମାର୍କ୍ସଙ୍କର ନାଁ ଓ ତାଙ୍କ ମତବାଦର ଆଲୋଚନା ଓ ପ୍ରୟୋଗ ଶୁଣିଲେ ଓ ଦେଖିଲେ ମାର୍କ୍ସ ଇହଧାମରେ ନାହାନ୍ତି ବୋଲି କେହି ବିଶ୍ୱାସ କରିପାରିବେ ନାହିଁ । ତଥାପି ଏକଥା ସତ ଯେ ମାର୍କ୍ସ ଏବେ ଆଉ ବଞ୍ଚିନାହାନ୍ତି ; ଖାଲି ତାଙ୍କ ଶରୀର ଯେ ମାଟିରେ ମିଶି ଯାଇଛନ୍ତି, ତାହା ନୁହେଁ ; ତାଙ୍କ ମତବାଦ ବି ଯୁଗୋପଯୋଗୀ ହୋଇ ପାରୁ ନାହିଁ ।

ମାର୍କ୍ସ ଜର୍ମାନୀର ଏକ ଛୋଟ ଗାଁରେ ୧୮୧୮ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ପ୍ରଥମେ ଜଣେ ଯିହୁଦୀ ଥିଲେ—ପରେ ଖ୍ରୀଷ୍ଟିଆନ ଧର୍ମଗ୍ରହଣ କରିଥିଲେ । ମାର୍କ୍ସଙ୍କ ଶିକ୍ଷା ସମୟରେ ହେଗେଲଙ୍କ ଦର୍ଶନ ଜର୍ମାନୀରେ ଆଧିପତ୍ୟ ବିସ୍ତାର କରିଥିଲା । ମାର୍କ୍ସ ହେଗେଲଙ୍କଠାରୁ ତାଙ୍କର ଐତିହାସିକ ଦ୍ୱନ୍ଦ୍ୱମୂଳକ ଯୁକ୍ତିବାଦ ଗ୍ରହଣ କରିଥିଲେ । ମାର୍କ୍ସଙ୍କ ଉପରେ ହେଗେଲଙ୍କ

ଆଦର୍ଶ ଅଲଗା ରୂପ ଧାରଣ କରିଥିଲା । ତଥାପି ହେଗେଲଙ୍କ ଆଦର୍ଶରେ ମାର୍କସ ଯେ ଅନେକ ପ୍ରଭାବିତ ହୋଇଥିଲେ, ଏଥିରେ କୌଣସି ସନ୍ଦେହ ନାହିଁ । ମାର୍କସ ତାଙ୍କ ଅଧ୍ୟୟନ ପରେ ଏକ ଅଧ୍ୟାପକ ହେବାକୁ ଚାହିଁଥିଲେ । କିନ୍ତୁ ତାଙ୍କୁ ସେ ସୁଯୋଗ ମିଳିଲା ନାହିଁ । ତେଣୁ ସେ ସମ୍ପାଦକ ଭାବରେ କାର୍ଯ୍ୟକଲେ । କିନ୍ତୁ ତାଙ୍କର ବିପ୍ଳବାତ୍ମକ ମତବାଦକୁ ଜର୍ମାନୀ ସରକାର ସହ୍ୟ କରି ପାରିଲେ ନାହିଁ । ତେଣୁ ସେ ଜର୍ମାନୀ ଛାଡ଼ି ପାରିସ ଗଲେ । ପାରିସରେ ସେ ସେହି ସାମ୍ବାଦିକତା କାର୍ଯ୍ୟରେ ନିଜକୁ ନିୟୋଗ କଲେ । ଫ୍ରାନ୍ସର ସାମ୍ୟବାଦୀମାନଙ୍କ ସହିତ ଏଠାରେ ତାଙ୍କର ଭେଟ ହେଲା । ସୁତ୍ରାଂ. ସାଣ୍ଟସିମୋ, ଲୁଇବ୍ଲାଙ୍କ ଓ ପ୍ରୁଧେଁ ପ୍ରଭୃତି ଫ୍ରାନ୍ସରେ ତତ୍କାଳୀନ ସାମ୍ୟବାଦୀ ଦଳ ତାଙ୍କୁ ସାମ୍ୟବାଦ ଦୀକ୍ଷାରେ ଦୀକ୍ଷିତ କଲେ । ଫ୍ରାନ୍ସର ଏହି ସାମ୍ୟବାଦୀମାନଙ୍କୁ କାଳ୍ପନିକ ସାମ୍ୟବାଦୀ କହି ମାର୍କସ ସେମାନଙ୍କୁ ଘୃଣା କରି ବୈଜ୍ଞାନିକ ସାମ୍ୟବାଦର ପ୍ରତିଷ୍ଠା କରିଥିଲେ ମଧ୍ୟ ମାର୍କସ ଯେ ଏମାନଙ୍କ ଠାରୁ ସାମ୍ୟବାଦ ଶିଖିଥିଲେ, ଏଥିରେ କୌଣସି ସନ୍ଦେହ ନାହିଁ । ଏହି ଫ୍ରାନ୍ସରେ ମାର୍କସଙ୍କର ପରମ ସଖା ଏଙ୍ଗେଲ୍ସଙ୍କ ସହିତ ସାକ୍ଷାତ ହୋଇଥିଲା । ଏଙ୍ଗେଲ୍ସ ଅନ୍ତ୍ୟକାଳରେ ବହୁ ମାର୍କସବାଦର ପରିପୁଷ୍ଟ କରିଥିଲେ । ଏଙ୍ଗେଲ୍ସଙ୍କ ସାହାଯ୍ୟ ଯୋଗୁଁ ମାର୍କସଙ୍କର ଅଧ୍ୟୟନ ଓ ଜୀବନଯାପନ ସମ୍ଭବ ହୋଇ ପାରିଥିଲା । ମାର୍କସ ଅର୍ଥନୀତିର ଛାତ୍ର ନଥିଲେ । କିନ୍ତୁ ପାରି-ସରେ ସାମ୍ବାଦିକତା କାର୍ଯ୍ୟରେ ରହିଥିବା ସମୟରେ ଅର୍ଥନୀତି ଅଧ୍ୟୟନ କରିବା ଦରକାର ମନେ କରୁଥିଲେ । ସେ ସେତେବେଳେ ଅର୍ଥନୀତି ଆଡାମ୍ ସ୍ମିଥ୍, ରିକାର୍ଡୋ ଓ ମାଲ୍ଥସ ପ୍ରଭୃତି ଇଂରେଜ ଲେଖକ ମାନଙ୍କ ଦ୍ୱାରା ପରିବର୍ଦ୍ଧିତ ହୋଇଥିବା ଆକାରରେ ଥିବା ସମୟରେ ମାର୍କସ ମଧ୍ୟ ଏମାନଙ୍କ ଲେଖା ପଢ଼ିବାକୁ ଆରମ୍ଭ କରିଥିଲେ ।

ମାର୍କସ ମଧ୍ୟ ଜୀବନରେ କେବେ ଧନ ଲାଭ କଲେ ନାହିଁ । ମୁଷ୍ଟିଏ ପତ୍ରିକାରେ ଲେଖାଲେଖି ଜର୍ମାନୀରେ, ଅନେକ ବନ୍ଧୁ ପାଖରୁ ମଧ୍ୟ ସାହାଯ୍ୟ ଲାଭ କରୁଥିଲେ । ପାଖରୁ ଟଙ୍କା ଆଣି କଷ୍ଟରେ ଦିନ ଏଣେତେଣେ ବୁଲି ମାର୍କସ ଶେଷରେ ଆସି ଲଣ୍ଡନରେ ପହଞ୍ଚିଲେ । ୧୮୫୦ ଠାରୁ ୧୮୮୩ ପର୍ଯ୍ୟନ୍ତ ଲଣ୍ଡନ ସହରର ମ୍ୟୁଜିଅମ ପଢ଼ାଘରେ ମାର୍କସଙ୍କର ପଢ଼ିବା କଟିଥିଲା । ଇଂରେଜ ଅର୍ଥନୀତିଜ୍ଞମାନଙ୍କ ଅର୍ଥନୀତି ଆଲୋଚନା କରୁକରୁ ଶେଷରେ ଏହି ଲଣ୍ଡନ ସହରରେ ୧୮୮୩ ଖ୍ରୀଷ୍ଟାବ୍ଦରେ ମାର୍କସଙ୍କର ଜୀବନ ଦୀପ ଲିଭି ଯାଇଥିଲା ।

ମାର୍କସ ଅନେକଟି ଦେଶର ଚିନ୍ତାଧାରାକୁ ଏକାଠି କରି ଏକ ନୂତନ ଚିନ୍ତାଧାରା ପ୍ରତିଷ୍ଠା କରିଥିଲେ । ଜର୍ମାନୀର ଦର୍ଶନ, ଫ୍ରାନ୍ସର ରାଜନୀତି ଓ ଇଂଲଣ୍ଡର ଅର୍ଥନୀତି—ଏହି ତିନିଟିର ସମନ୍ୱୟରେ ମାର୍କସବାଦ । ଜର୍ମାନୀର ହେଗେଲଙ୍କ ଦ୍ୱନ୍ଦ୍ୱମୂଳକ ଆଦର୍ଶବାଦ (Dialectical Idealism)କୁ ଫିଉରବାଖ୍ ବଦଳାଇ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ (Dialectical materialism)ର ରୂପରେଖ ଦେଲେ । ମାର୍କସ ଫିଉରବାଖଙ୍କ ଦର୍ଶନ ଗ୍ରହଣ କରି ଏହି ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଭିତ୍ତି ଉପରେ ମାର୍କସ ଐତିହାସିକ ବସ୍ତୁବାଦ (Historical materialism) ସୃଷ୍ଟି କଲେ । ଫ୍ରାନ୍ସର ସାମ୍ୟବାଦୀମାନେ ଏକ ସହଯୋଗ ମୂଳକ ସାମ୍ୟବାଦ ପ୍ରଚାର କରୁଥିଲେ । ସେମାନେ ଭାବପ୍ରବଣ ବାଦରେ ବିଶ୍ୱାସ କରୁଥିଲେ । ମାର୍କସ ସେମାନଙ୍କଠାରୁ ସାମ୍ୟବାଦ ଗ୍ରହଣ କଲେ । କିନ୍ତୁ ମାର୍କସଙ୍କ ହାତରେ ଏହା ସଂଘର୍ଷର ଅନ୍ୟ ଧାରଣା କଲା । ଫ୍ରାନ୍ସର ସମାଜ ସଂସ୍କାରକମାନେ ସମାଜକୁ ବଦଳେଇବା ପାଇଁ ଏକ ସହଯୋଗମୂଳକ ସ୍ୱପ୍ନର କଳ୍ପନା କରୁଥିଲେ, ସେଥିରେ ଶ୍ରେଣୀ ସଂଘର୍ଷ ନଥିଲା । ମାର୍କସ କିନ୍ତୁ ଶ୍ରେଣୀ ସଂଘର୍ଷକୁ ବଡ଼ କରି

ଅନ୍ତର୍ବିପ୍ଳବର ଆବଶ୍ୟକତା ଅନୁଭବ କଲେ । ତେଣୁ ମାର୍କସଙ୍କ ବୈଜ୍ଞାନିକ ସାମ୍ୟବାଦ ବିପ୍ଳବର ଉଦ୍‌ଘୋଷଣ କଲା । ବାକି ରହିଲା ଅର୍ଥନୀତି । ଇଂଲଣ୍ଡର ଅର୍ଥନୀତିଜ୍ଞମାନେ ବିନିମୟ ପଣ୍ୟର ଦରଦାମ ଶ୍ରମିକର ଶ୍ରମ ଅନୁପାତରେ (Labour Theory of value) ନିରୂପଣ କରୁଥିଲେ । ଆଡ଼ାମସ୍ମିଥ୍, ରିକାର୍ଡୋ ଓ ମାଲ୍‌ଥସ୍‌ଙ୍କ ଲେଖାରେ ଏହାର ଅନେକ ବ୍ୟାଖ୍ୟା ଅଛି । ଏ ବିଷୟରେ ରିକାର୍ଡୋ ସବୁଠାରୁ ଅଗ୍ରଣୀ । ରିକାର୍ଡୋଙ୍କ ମତରେ ଶ୍ରମିକମାନଙ୍କ ବ୍ୟତୀତ ଅନ୍ୟ କେହି ଉତ୍ପାଦନ କରନ୍ତି ନାହିଁ । ତେଣୁ ଉତ୍ପାଦନ ଜିନିଷର ଦରଦାମ ଶ୍ରମିକର ଶ୍ରମ ନେଇ ଠିକ୍ ହୁଏ । ଗୋଟିଏ ଚୌକିକୁ ଜଣେ ଶ୍ରମିକ ଯଦି ୮ ଘଣ୍ଟା ପରିଶ୍ରମ କରି ତିଆରି କରେ ଓ ଗୋଟିଏ ଆଲମିରା ତିଆରି କରିବାକୁ ଆଉଜଣେ ଶ୍ରମିକକୁ ଯଦି ୧୬ ଲାଗେ ତାହେଲେ ଗୋଟିଏ ଆଲମିରାର ମୂଲ୍ୟ ୨ଟି ଚୌକି ସହିତ ସମାନ । ରିକାର୍ଡୋଙ୍କର ଏହି ବ୍ୟାଖ୍ୟାକୁ ମାର୍କସ ପରିପୂର୍ଣ୍ଣ ଗ୍ରହଣ କରିନେଲେ । ରିକାର୍ଡୋଙ୍କ ମନରେ ଟିକିଏ ସନ୍ଦେହ ଥିଲା । ଶ୍ରମିକ ଓ ଶ୍ରମିକ ଭିତରେ ଶ୍ରମ ନେଇ ଫରକ ହୋଇପାରେ ବୋଲି ସେ ପ୍ରଶ୍ନ ଉଠାଇଥିଲେ । କିନ୍ତୁ ସମାଧାନ କରିବାକୁ ଯୁକ୍ତି ନଥିଲେ । କିନ୍ତୁ ମାର୍କସଙ୍କର ଆଲୋଚନାରେ ସନ୍ଦେହର ଅବକାଶ ନଥିଲା । ସେ ସମସ୍ତ ପ୍ରକାର ଶ୍ରମିକମାନଙ୍କୁ ଏକ ପ୍ରକାର ଶ୍ରମିକ ବୋଲି ଧରି-ନେଇଥିଲେ । ରିକାର୍ଡୋ ଆଧାରରେ ରହିଥିଲେ । ଯଦି ଶ୍ରମିକ ସବୁ ଉତ୍ପାଦନ କଲା, ତାହେଲେ ନ୍ୟାୟ ଅନୁସାରେ ଶ୍ରମିକ ସବୁ ପାଇବା କଥା । କିନ୍ତୁ ରିକାର୍ଡୋଙ୍କ ମଜୁରି ନୀତି ଅନୁସାରେ ଶ୍ରମିକ ପାଇବ କେବଳ ତାର ନିତାନ୍ତ ଦରକାରୀ-ମାତ୍ରା । ନହେଲେ ସେ ବଞ୍ଚି ପାରିବ ନାହିଁ (Subsaistence wage) । ରିକାର୍ଡୋ ଏତିକିରେ ରହିଲେ । ମାର୍କସ ଏଥିରୁ ବାହାର କଲେ ତାଙ୍କର ପ୍ରସିଦ୍ଧ

'ବଳକା ଲାଭ' (Surplus value) । ଏ ହିଁ ମାର୍କସଙ୍କର ନିଜର ନୂତନ । ବହୁପୂର୍ବରୁ ପେଟି ନାମକ ଅଭ ରିକାର୍ଡୋ ଆଦିଙ୍କ ଅର୍ଥ-ନୀତିଜ୍ଞ ମାର୍କସଙ୍କ ପୂର୍ବରୁ ଏହି 'ବଳକା ଲାଭ' କଥା ଆଲୋଚନା କରୁଥିଲେ । ମାର୍କସ ସେଥିପାଇଁ ସେଇଟିକୁ ଅର୍ଥଶାସ୍ତ୍ରର ମୁଖ୍ୟ ବୋଲି ଘୋଷଣା କରିଅଛନ୍ତି । ସେ ଯାହା ହେଉ ମାର୍କସଙ୍କ ଲେଖାରେ ଏହି ଧାରଣା ବଳ ପାଇଲା । ଶ୍ରମିକମାନେ ସବୁ ଉତ୍ପାଦନ କଲେ । କିନ୍ତୁ ସେମାନଙ୍କର ବଞ୍ଚିବା ପାଇଁ ଯେତିକି ଦରକାର, ତାହାଠାରୁ ଅଧିକ ସେମାନଙ୍କୁ ମିଳିଲା ନାହିଁ । କଳକାରଖାନା ପୁଞ୍ଜିପତିମାନଙ୍କର ବ୍ୟକ୍ତିଗତ ସମ୍ପତ୍ତି ହୋଇଥିବାରୁ ସେମାନେ ଶ୍ରମିକମାନଙ୍କ ଶ୍ରମରୁ ଅନ୍ୟାନ୍ୟ ଜିନିଷପତ୍ର ସବୁ କିଣି କମ ଦାମରେ ମଜୁରି ଦେଲେ ଓ ବଳକା ଲାଭର ଆତ୍ମସାତ କଲେ । ତେଣୁ ଅର୍ଥନୀତିର ଆଲୋଚନା ସମାଜବାଦର କାର୍ଯ୍ୟକ୍ରମ ପାଇଁ ସୁଯୋଗ ଦେଲା ।

ଜର୍ମାନୀ ଦେଶର ଚିନ୍ତାଧାରାକୁ ଏକାଠି କରି ଏକ ନୂତନ ଚିନ୍ତାଧାରା ସୃଷ୍ଟି କରିବା ଏକ ଅଦ୍ଭୁତ ପାଣ୍ଡିତ୍ୟର ନିଦର୍ଶନ । କାର୍ଲମାର୍କସ ଯେ ଜଣେ ଅଦ୍ଭୁତ ପଣ୍ଡିତ ଥିଲେ, ଏଥିରେ କୌଣସି ସନ୍ଦେହ ନାହିଁ । ଲଣ୍ଡନ ଯାଦୁଘରେ ତାଙ୍କର ଅଧ୍ୟବସାୟର ଚିହ୍ନ ଏ ପର୍ଯ୍ୟନ୍ତ ରହିଛି । ସକାଳେ ଯାଦୁଘର ଖୋଲିବାଠାରୁ ରାତିରେ ବନ୍ଦହେବା ପର୍ଯ୍ୟନ୍ତ ମାର୍କସ ସେହି ଯାଦୁଘର ପୁସ୍ତକ ଭିତରେ ବୁଡ଼ି ରହୁଥିଲେ । ଯାଦୁଘରୁ ଯେଉଁମାନେ ଜ୍ଞାନ ସଂଗ୍ରହ କରନ୍ତି, ସେମାନଙ୍କର ସାଧାରଣତଃ ପାରିପାର୍ଶ୍ୱିକ ଅବସ୍ଥା ସହିତ କୌଣସି ସମ୍ପର୍କ ରହିପାରେ ନାହିଁ । ମାର୍କସ ଏ ଦୋଷରୁ ଅବ୍ୟାହତି ପାଇଥିବେ ନାହିଁ । ଉଚ୍ଚ ଅର୍ଥନୀତିର କଥା ସେ ଯେଉଁ ଜ୍ଞାନ ଯାଦୁଘରୁ ୧୮୬୦ ବର୍ଷ ତଳେ ସଂଗ୍ରହ ହୋଇଥିଲା, ତାହା ଏ ପର୍ଯ୍ୟନ୍ତ ଯଥୁ-ଯଥ୍ରେ ନ ହୋଇ [illegible] ହେବାର [illegible] ରହିଛି ।

ଏଇଠି ମାର୍କସ୍‌ଙ୍କ ବାହାଦୁରୀ । ଏଥିପାଇଁ ମାର୍କସ୍‌ଙ୍କୁ ଯେଉଁ ସମ୍ମାନ ମିଳିବାର କଥା ତାହା ମିଳିନାହିଁ ।

ଆଉ ଗୋଟିଏ କଥା । ଆମେମାନେ ଯେତେବେଳେ ହେଗେଲ୍ ଓ ଫିଉରବାକ୍‌ଙ୍କ ଦର୍ଶନ ଆଲୋଚନା କରୁ, ସେତେବେଳେ ହେଗେଲ୍ ଓ ଫିଉରବାକ୍‌ଙ୍କ ସହିତ ଏକମତ ନହେଲେ ମଧ୍ୟ ସେମାନଙ୍କର ଉଚ୍ଚ ପ୍ରଶଂସା କରୁ । ଦର୍ଶନ ଶାସ୍ତ୍ରରେ ସେମାନଙ୍କ ଦାନକୁ ଅଦ୍ୱିତୀୟ ବୋଲି କହୁ । ସେହିପରି ଫ୍ରାନ୍ସର ସାମ୍ୟବାଦୀମାନେ ସେମାନଙ୍କର କଳ୍ପନା ପାଇଁ ଆମମାନଙ୍କଠାରୁ ପ୍ରଶଂସା ପାଆନ୍ତି । ଇଂଲଣ୍ଡର ଆଡାମ୍ ସ୍ମିଥ୍ ଓ ରିକାର୍ଡୋ ପ୍ରଭୃତି ଅର୍ଥନୀତିଜ୍ଞମାନେ ଅର୍ଥଶାସ୍ତ୍ରର ସ୍ରଷ୍ଟା ବୋଲି ତ ଖ୍ୟାତି ପାଇ ଅଛନ୍ତି । କିନ୍ତୁ ମାର୍କସ୍ ଏମାନଙ୍କର ମତବାଦକୁ ଏକତ୍ର କରିଥିଲେ ମଧ୍ୟ ମାର୍କସ୍‌ଙ୍କ ଖୁବ୍ କଡ଼ା ଦୃଷ୍ଟିରେ ସମାଲୋଚନା କରାଯାଏ । ଆମେମାନେ କମ୍ୟୁନିଷ୍ଟମାନଙ୍କ କଥା କହୁନାହିଁ । ମାର୍କସ୍ ଓ ଏଙ୍ଗେଲସଙ୍କର ଦେବତା 'କମ୍ୟୁନିଷ୍ଟ ମାନିଫେଷ୍ଟୋ' ଓ 'କାପିଟାଲ୍' ସେମାନଙ୍କର ବାଇବେଲ ଗୀତା । ଲେନିନ୍ ଓ ଷ୍ଟାଲିନ୍ ଏକ ଏକ ଅବତାର । ଆମେମାନେ ସମାଲୋଚକମାନଙ୍କ କଥା କହୁଛୁ । ଯେଉଁମାନେ ମାର୍କସ୍‌ଙ୍କ ସହିତ ଏକମତ ନୁହଁନ୍ତି, ସେମାନେ ମାର୍କସ୍‌ଙ୍କ ସମ୍ବନ୍ଧରେ ଆଲୋଚନା କଲାବେଳେ ମାର୍କସ୍‌ଙ୍କ ପାଣ୍ଡିତ୍ୟ ଓ ଅଧ୍ୟବସାୟକୁ ଅସ୍ୱୀକାର କରନ୍ତି । ଗୋଟିଏ ପକ୍ଷ ମାର୍କସ୍‌ଙ୍କୁ ଦେବତା କରିବାର ଅଦମ୍ୟ ଚେଷ୍ଟା ଓ ଅନ୍ୟପକ୍ଷେ ମାର୍କସ ଓ ମାର୍କସ୍‌ଙ୍କର ମତବାଦକୁ ନିନ୍ଦା କରିବାର ପ୍ରବଳ ଉଦ୍ୟମ । ମାର୍କସ ଇତିହାସରେ ଯେଉଁ ସତ୍ୟର ଅବତାରଣା କରିଛନ୍ତି, ନାନା କ୍ଷେତ୍ରରେ ତାହାର ପ୍ରୟୋଗ ହୋଇଛି । ସେଥିପାଇଁ ରାଜନୀତିକ କର୍ମୀର ଯୋଗୁଁ ମାର୍କସ ନିରପେକ୍ଷ ଭାବରେ ବିଚାରର ସୁଯୋଗ ପାଇନାହାନ୍ତି । ଏଥିପାଇଁ ମାର୍କସ ବା ଏଙ୍ଗେ-

କାଂଶରସ ଦାସ୍ତୀ । ସେ ଯାହାହେଉ, ମାର୍କସଙ୍କ ମତବାଦ ସହିତ ଏକମତ ନ ହେଲେ ମଧ୍ୟ, ମାର୍କସଙ୍କ ଜୀବନ ବ୍ୟାପି ଗବେଷଣା ଓ ଅଗାଧ ପାଣ୍ଡିତ୍ୟର ମହତ୍ତ୍ୱକୁ ଆମକୁ ସ୍ୱୀକାର କରିବାକୁ ହେବ ।

ମାର୍କସଙ୍କର ମତବାଦର କେତୋଟି ଦିଗ ଆମେ ଏଠାରେ ଅଧ୍ୟୟନ କରିବା । ମାର୍କସଙ୍କ ରାଜନୀତି ଯାହା ହୋଇଥାଉ, ତା ହେଲେ ସେଥିରେ ଗୁଟିଏ ବିଶିଷ୍ଟ ପ୍ରଭାବ ଅଛି ବୋଲି ଜଣାପଡ଼ିବ ପ୍ରଥମରେ ମାର୍କସଙ୍କର ଐତିହାସିକ ବସ୍ତୁବାଦ । ଏହି ବସ୍ତୁବାଦ ପ୍ରୟୋଗ କରି ମାର୍କସ ଇତିହାସର ଏକ ନୂଆ ଅର୍ଥ ଦେଇଛନ୍ତି । ଇତିହାସର ପ୍ରଚଳିତ ଉତ୍ପାଦନ ପ୍ରଣାଳୀ ଉପରେ ନିର୍ଭର କରୁଛି । ନୀତି, ବ୍ୟବସ୍ଥା ଏବଂ ଧର୍ମ ଓ ଉତ୍ପାଦନ ପ୍ରଣାଳୀ ଦ୍ୱାରା ପରିଚାଳିତ ଓ ପରିବର୍ତ୍ତିତ ହେଉଛି । ଦ୍ୱିତୀୟରେ ମାର୍କସଙ୍କର ଶ୍ରେଣୀ ସଂଘର୍ଷ । ଉତ୍ପାଦନ ପ୍ରଣାଳୀର କର୍ତ୍ତୃତ୍ୱ ଓ ନିୟନ୍ତ୍ରଣ ନେଇ ସମାଜ ଦୁଇ ଭାଗରେ ବିଭକ୍ତ ହୋଇଛି । ସମାଜର ଏକ ଶ୍ରେଣୀ ଉତ୍ପାଦନ ପ୍ରଣାଳୀର ମାଲିକ ହୋଇ ତାକୁ ନିଜ ଇଚ୍ଛା ଅନୁସାରେ ଓ ନିଜ ସ୍ୱାର୍ଥ ଉଦ୍ଦେଶ୍ୟରେ ପରିଚାଳିତ କରୁଛନ୍ତି । ଅନ୍ୟମାନେ ନିଜର ଜୀବିକା ନିର୍ବାହ ପାଇଁ ଏହି ଶ୍ରେଣୀ ଉପରେ ନିର୍ଭର କରୁଛନ୍ତି । ଦୁଇ ଶ୍ରେଣୀ ଭିତରେ ଘୋର ସଂଘର୍ଷ ସୃଷ୍ଟି ହୋଇଛି । ତୃତୀୟରେ ଏହି ସଂଘର୍ଷ ହିଂସା ଓ ରକ୍ତାକ୍ତ ବିପ୍ଳବର ବାଟ ଧରୁଛି । ଯେଉଁମାନଙ୍କ ହାତରେ ଉତ୍ପାଦନ ପ୍ରଣାଳୀ ଅଛି, ସେମାନଙ୍କ ହାତରେ କ୍ଷମତା ରହିଛି । ସେହି କ୍ଷମତାକୁ ସେମାନେ ନିଜ ସ୍ୱାର୍ଥ ଉଦ୍ଦେଶ୍ୟରେ ବ୍ୟବହାର କରୁଛନ୍ତି । ସରକାର ଏହି କ୍ଷମତା ପ୍ରୟୋଗର ଏକ ଅସ୍ତ୍ର ହୋଇ ରହିଛି । ଏହି ଅସ୍ତ୍ର ଏହି ହିଂସାର ଯନ୍ତ୍ର । ପୁଲିସ ଓ ସୈନ୍ୟ ମାନଙ୍କଠାରେ କ୍ଷମତା ପ୍ରୟୋଗ କରି

ଯାଉଛନ୍ତି । ତେଣୁ ତାଂକ ସାହାଯ୍ୟରେ ଏହି ଅଗ୍ରଲୁ ଚେଷ୍ଟା କରିବେ । ଫଳରେ ଏହି ଅନ୍ତର୍ଭୁକ୍ତ ପ୍ରଦେଶ ନୂତନ ସାମ୍ୟବାଦ ସଂସ୍ଥା ଗଢ଼ିବା ପାଇଁ ସର୍ବହରାର ଏକଛତ୍ର ଶାସନ ଗଢ଼ାଯିବ । ସର୍ବହରାର ପ୍ରତିନିଧି ହିସାବରେ କମ୍ୟୁନିଷ୍ଟମାନେ ଏହି ଏକଛତ୍ର ଶାସନ ପରିଚାଳନା କରିବେ । ଏକଛତ୍ର ଶାସନ ସାହାଯ୍ୟରେ ଶ୍ରେଣୀହୀନ ସାମ୍ୟବାଦୀ ସମାଜ ପ୍ରତିଷ୍ଠା କରାଯିବ ।

ଏ ହେଲା ମୋଟା ମୋଟି ମାର୍କସଙ୍କର ସିଦ୍ଧାନ୍ତ. ଏହି ରୂପ-ରେଖା. ଅନ୍ୟ ପ୍ରବନ୍ଧରେ ଏହାର ବିସ୍ତୃତ ଆଲୋଚନା କରାଯିବ ।

# ମାର୍କସବାଦ

ଏ ପ୍ରବନ୍ଧରେ ମାର୍କସଙ୍କର ଗୁଟିଏ ମୁଖ୍ୟ ସିଦ୍ଧାନ୍ତର ଆଲୋଚନା କରିବା । ପ୍ରଥମରେ ମାର୍କସଙ୍କର ଐତିହାସିକ ବସ୍ତୁବାଦ ଦେଖିବା । ମାର୍କସଙ୍କ ମତରେ ଉତ୍ପାଦନ ପ୍ରଣାଳୀ ସମାଜର ଶିକ୍ଷା, ସଂସ୍କୃତି, ଧର୍ମ ଓ ରାଜନୀତି ପ୍ରଭୃତି ବିଭିନ୍ନ ବିଭାଗକୁ ନିୟନ୍ତ୍ରଣ କରେ । ଇତିହାସ ଉତ୍ପାଦନ ପ୍ରଣାଳୀ ଦ୍ୱାରା ନିୟନ୍ତ୍ରିତ ହୁଏ । ଯେତେବେଳେ ସାମନ୍ତବାଦ ଥିଲା, ସେତେବେଳେ ରାଜା, ଜମିଦାରମାନେ ଇତିହାସକୁ ନିୟନ୍ତ୍ରଣ କରୁଥିଲେ । ସେମାନଙ୍କ ମନ ଅନୁଯାୟୀ ସାହିତ୍ୟ ଓ ସଙ୍ଗୀତ ସୃଷ୍ଟି ହେଉଥିଲା । ଉପନ୍ୟାସରେ ସେମାନେ ନାୟକ ଓ ନାୟିକା ହେଉଥିଲେ—ସେମାନଙ୍କର ଜୀବନ ଓ ରହିବା ପ୍ରଣାଳୀ ଉପନ୍ୟାସର ଭିତ୍ତିବସ୍ତୁ ହେଉଥିଲା । ସଙ୍ଗୀତ ସବୁ ସେମାନଙ୍କ ପାଇଁ ଲେଖାଯାଉଥିଲା । ସେମାନେ ଯେଉଁ ପ୍ରକାରେ ନିଜର ଜୀବନ କଟାଉଥିଲେ, ସେହି ପ୍ରକାରକୁ ଅନ୍ୟମାନେ ଅନୁକରଣ କରୁଥିଲେ । ମୋଟ ଉପରେ ସେମାନଙ୍କୁ କେନ୍ଦ୍ର କରି ଏକ ସଭ୍ୟତା ମୁଣ୍ଡଟେକି ଉଠିଥିଲା । ସାମନ୍ତବାଦ ଗଲା । ରାଜରାଜୁଡ଼ା ଲୋପ ପାଇଲେ । ତାଙ୍କ ଜାଗାରେ ପ୍ରଥମେ ବ୍ୟବସାୟୀମାନେ ଆସିଲେ । ବ୍ୟବସାୟୀମାନେ ପରେ ଶିଳ୍ପର ମାଲିକ ହେଲେ । ପୁଞ୍ଜିବାଦ ନାମକ ଏକ ନୂଆ ପ୍ରକାର ସଂସ୍ଥା ମୁଣ୍ଡଟେକି ଉଠିଲା । କଳକାରଖାନାକୁ କେନ୍ଦ୍ରକରି ଏକ ନୂଆ ପ୍ରକାର ସଭ୍ୟତା ମୁଣ୍ଡଟେକି ଉଠିଲା । ଏହି ସଭ୍ୟତାର ପରିଚାଳକ ହେଲେ ପୁଞ୍ଜିପତି ଦଳ । ସେମାନଙ୍କ ମତ ଅନୁଯାୟୀ ସାହିତ୍ୟ ଲେଖାଗଲା, ଖବରକାଗଜ ପ୍ରକାଶ ପାଇଲା, ସିନେମା ତିଆରି ହେଲା । ସେମାନେ ହେଲେ

ସମ୍ପତ୍ତିର କର୍ଣ୍ଣଧାର । ଶ୍ରମଜୀବୀଙ୍କୁ ମଧ୍ୟ ସେମାନେ ପଦଦଳିତ କଲେ । ପାର୍ଲିଅମେଣ୍ଟକୁ ନିଜର ପ୍ରାର୍ଥୀ ଠିଆ କରାଇ ଶାସନରେ ରଖିବାକୁ ପ୍ରସ୍ତାବ କଲେ । ଏଥିପାଇଁ ଯାହା ହାତରେ ଉତ୍ପାଦନ ପ୍ରଣାଳୀ ରହିଛି, ସେ ଯେ ଉତ୍ପାଦନ ପ୍ରଣାଳୀକୁ ବ୍ୟବହାର କରି ସମାଜର ଉତ୍ପାଦନକୁ ନିୟନ୍ତ୍ରଣ କଲେ ତା ନୁହେଁ, ଏହି ଉତ୍ପାଦନ ପ୍ରଣାଳୀ ସାହାଯ୍ୟରେ ସମାଜର ଶିକ୍ଷା, ସଂସ୍କୃତି ଓ ସଭ୍ୟତା ପ୍ରଭୃତି ସମସ୍ତ ବିଷୟକୁ ପରିଚାଳନା କଲେ । ଏ ହେଲା ମାର୍କସଙ୍କର ଐତିହାସିକ ବସ୍ତୁବାଦ ।

ମାର୍କସ ଯଦି ଉତ୍ପାଦନ ପ୍ରଣାଳୀକୁ ଇତିହାସ ସୃଷ୍ଟି କରିବାର ଏକ ଘଟଣା ବା ମୁଖ୍ୟ ଏକ ଘଟଣା ହିସାବରେ ଧରି ନେଇଥାନ୍ତେ, ତାହେଲେ ମାର୍କସଙ୍କ ସିଦ୍ଧାନ୍ତ ଅମତ ହେବାର ଅମର କିଛି ନ ଥାନ୍ତା । କିନ୍ତୁ ମାର୍କସ ଉତ୍ପାଦନ ପ୍ରଣାଳୀ ଅନୁସାରେ ଇତିହାସକୁ ଅର୍ଥ କରିବାରେ ଲାଗିଲେ । ଉତ୍ପାଦନ ପ୍ରଣାଳୀହିଁ ଇତିହାସ ସୃଷ୍ଟି କରୁଛି—ଉତ୍ପାଦନ ପ୍ରଣାଳୀର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଇତିହାସ ପରିବର୍ତ୍ତିତ ହେଉଛି । ତେଣୁ ଇତିହାସ ଉତ୍ପାଦନ ପ୍ରଣାଳୀର ଏକ ଛାୟାରୂପେ ଚାଲିଛି । କମ୍ୟୁନିଷ୍ଟ ମାନିଫେଷ୍ଟୋରେ ମାର୍କସ ଲେଖିଲେ—

"That in every historical epoch, the prevailing mode of economic production and exchange, and the social organisation necessarily following foom it, from the basis which is built up, and from which alone can be explained the political and intellectual history of that epoch......"

କିନ୍ତୁ ଇତିହାସ ସମାଜକୁ ନେଇ ହୁଏ । ସମାଜର ଗତି ମନୁଷ୍ୟର ଜୀବନ ଧାରା ଉପରେ ନିର୍ଭର କରେ । ଇତିହାସ ଲୋକଙ୍କର ଅଥବା ମନୁଷ୍ୟ ଜୀବନର ଏକ କାହାଣୀ । ଏହି କାହାଣୀ ଏକ ଅର୍ଥନୈତିକ ସଂସ୍ଥା ଉପରେ ପ୍ରତ୍ୟକ୍ଷ ନିର୍ଭର କରେନାହିଁ । ମଣିଷର ଜୀବନରେ ଅର୍ଥନୈତିକ ସଂସ୍ଥା ଉପରେ ସାହାଯ୍ୟ କରେ, ଧର୍ମ, ନୈତିକତା, ମତବାଦ, ବ୍ୟକ୍ତିତ୍ୱ ଓ ଅନେକ ପ୍ରକୃତ ଅନ୍ୟାନ୍ୟ ଜିନିଷମାନ ସେଥିରେ ସାହାଯ୍ୟ କରନ୍ତି । ମଧ୍ୟଯୁଗ ଇଉରୋପର ଇତିହାସ ଆଲୋଚନା କଲେ ଦେଖାଯିବ ଯେ, ସେଥିରେ ଧର୍ମ ପ୍ରଧାନ ଭାଗ ନେଇଥିଲା । ଆମ ଦେଶର ଏହି ପାକିସ୍ଥାନ ଗଠନ କଥା ଦେଖାଯାଉ । ପାକିସ୍ଥାନ ସଂଗଠନରେ ଉତ୍ପାଦନ-ପ୍ରଣାଳୀ ବେଶୀ ଭାଗ ନେଇଥିଲା ନା ସାମ୍ପ୍ରଦାୟିକତା ବେଶୀ ଭାଗ ନେଇଥିଲା ? ଇତିହାସ କୌଣସି ଗୋଟିଏ ଜିନିଷ ଉପରେ ନିର୍ଭର କରେନାହିଁ । ମଣିଷଙ୍କର ଜନ୍ମ ପର ଅନେକ ସମୟରେ ଅତର୍କିତ ଘଟଣା ମଧ୍ୟ ଇତିହାସକୁ ପରିବର୍ତ୍ତନ କରିଦିଏ ।

ପ୍ରଥମ ମହାଯୁଦ୍ଧ ନ ହୋଇଥିଲେ ବୋଧହୁଏ ରୁଷିଆରେ ସମାଜିକ ବିପ୍ଳବ ହୋଇ ପାରିଥାନ୍ତା କି ନାହିଁ ସନ୍ଦେହ । ଦ୍ୱିତୀୟ ମହାଯୁଦ୍ଧ ପରେ ଭାରତ ସ୍ୱାଧୀନତା ପାଇଲା, ଚୀନରେ କମ୍ୟୁନିଷ୍ଟ ଶାସନ କାୟମ କଲେ, ଏସିଆର ଶକ୍ତି ପୃଥିବୀରେ ବଢ଼ିଲା । ଏଥିପାଇଁ ଅନ୍ୟ ଯେତେ କାରଣ ଥିଲେ ମଧ୍ୟ ଦ୍ୱିତୀୟ ମହାଯୁଦ୍ଧକୁ ଏକ କାରଣ ବୋଲି ଧରାଯିବ । ବ୍ୟକ୍ତିତ୍ୱର ପ୍ରଭାବ ମଧ୍ୟ ଇତିହାସର ରୂପ ବଦଳାଇ ଦିଏ । ଆମେରିକାର ସ୍ୱାଧୀନତା ସଂଗ୍ରାମରେ ୱାଶିଂଟନ ଓ ଜେଫରସନଙ୍କର ନେତୃତ୍ୱ, ଫ୍ରାନ୍ସର ବିପ୍ଳବ ବେଳେ ରୁଷୋ ଓ ଭଲଟେୟାରଙ୍କ ଅମର ଲେଖନୀ, ଇଟାଲୀର ସ୍ୱାଧୀନତା ବେଳେ ଗାରିବାଲ୍‌ଡି ଓ ମାଜିନୀଙ୍କ ନେତୃତ୍ୱ, ରୁଷିଆର ସମାଜିକ

ବିପ୍ଳବ ବେଳେ ଲେନିନଙ୍କର ସଙ୍ଗଠନ ଶକ୍ତି, ଆୟର୍ଲାଣ୍ଡର ସଂଗ୍ରାମରେ ଡ. ଭେଲେରାଙ୍କର ପ୍ରଭାବ ଓ ଆମ ଦେଶର ସ୍ୱାଧୀନତା ସଂଗ୍ରାମରେ ଗାନ୍ଧିଜୀଙ୍କର ଅହିଂସା ସଂଗ୍ରାମ ଓ ପ୍ରତିଭାଶାଳୀ ବ୍ୟକ୍ତିତ୍ୱ ଯେ ଘଟଣାର ସୃଷ୍ଟି କରନ୍ତି, ଏଥିରେ କଣ ସନ୍ଦେହ ଅଛି ? ମାର୍କ-ସବାଦୀମାନେ କହନ୍ତି ଯେ ପରିସ୍ଥିତି ଅନୁସାରେ ବ୍ୟକ୍ତିତ୍ୱର ଆବିର୍ଭାବ ହୁଏ । ଗାନ୍ଧିଜୀ ନ ଥିଲେ ମଧ୍ୟ ଦେଶଟାରୁ କେହି ଗାନ୍ଧିଜୀଙ୍କ ପରି ଆଉ ଜଣେ କେନ୍ଦ୍ର ବ୍ୟକ୍ତି ସୃଷ୍ଟି ହୋଇ ପାରନ୍ତା । ଏ କଥା ସତ ଯେ ମନୁଷ୍ୟ ଅବସ୍ଥା ଦ୍ୱାରା ପ୍ରଭାବିତ ହୁଏ । କିନ୍ତୁ ଅବସ୍ଥା ମନୁଷ୍ୟକୁ ସୃଷ୍ଟି କରେ ନାହିଁ—ମନୁଷ୍ୟ ଅବସ୍ଥାକୁ ସୃଷ୍ଟି କରେ । ଗାନ୍ଧିଜୀ ଆମ ଦେଶରେ ଏପରି ଏକ ପ୍ରକାର ଅହିଂସା ସଂଗ୍ରାମ ସୃଷ୍ଟି କଲେ ଯେ ଆମେ ଇଂରେଜ ଲୋକମାନଙ୍କୁ ଘୃଣା ନକରି ଇଂରେଜ ଶାସନ ବିରୁଦ୍ଧରେ ଆନ୍ଦୋଳନ ସୃଷ୍ଟି କଲୁ । ତେଣୁ ଇଂରେଜ ଶାସନ ପରେ ଇଂଲଣ୍ଡ ସହିତ ବିରୋଧ ଭାବ ସୃଷ୍ଟି ନହୋଇ, ସଦ୍ଭାବ ପ୍ରତିଷ୍ଠା ହୋଇ ପାରିଛି । ଗାନ୍ଧିଜୀଙ୍କ ପ୍ରଭାବ ଯୋଗୁଁ ଏହା ହୋଇଛି ବୋଲି କଣ କୁହାଯିବ ନାହିଁ ? ଗାନ୍ଧିଜୀଙ୍କ ନେତୃତ୍ୱ ଆମର ସ୍ୱାଧୀନତା ସଂଗ୍ରାମକୁ ପରିଚାଳନା ନ କରିଥିଲେ ଆମେ ହୁଏତ ରକ୍ତ ନଦୀରେ ଭାସୁଥାନ୍ତେ । ଅବସ୍ଥା ମନୁଷ୍ୟକୁ ସୃଷ୍ଟି କରେ ବୋଲି ଯଦି କହିବା ତାହେଲେ ମାର୍କସ ଓ ଷ୍ଟାଲିନଙ୍କ ଭାଗ୍ୟ କଣ ହେବ ? ମାର୍କସ କମ୍ୟୁନିଷ୍ଟ ମାନିଫେଷ୍ଟୋ ନ ଲେଖିଥିଲେ ଓ ଲେନିନ ଋଷିଆର ବିପ୍ଳବ ପରିଚାଳନା ନକରିଥିଲେ ଯଦି ଅନ୍ୟ କେହି ତାହା କରି ପାରିଥାନ୍ତେ, ତା ହେଲେ ମାର୍କସ ଓ ଲେନିନଙ୍କୁ ଏତେ ପୂଜା କାହିଁକି ? ଯେଉଁମାନେ ଇତିହାସର ଛାତ୍ର, ସେମାନେ ଜାଣିବେ ଯେ ଗୋଟିଏ ଗୋଟିଏ ବ୍ୟକ୍ତି ଇତିହାସର ଧାରା ବଦଳେଇ ଦେଇ

ଯାଇଛନ୍ତି । ହିଟଲର ନଥିଲେ ହୁଏତ ଦ୍ୱିତୀୟ ମହାଯୁଦ୍ଧ ହୋଇଥାନ୍ତା—କିନ୍ତୁ ୧୯୩୯ ରେ ନହୋଇ ହୁଏତ ୧୯୫୪ ପର୍ଯ୍ୟନ୍ତ ଅଟକି ଯାଇପାରିଥାନ୍ତା । ଗାନ୍ଧିଜୀ ନଥିଲେ ଭାରତ ସ୍ୱାଧୀନତା ପାଇଥାନ୍ତା । କିନ୍ତୁ ଭାରତ ସଂଗ୍ରାମର ଆକାର ହୁଏତ ବଦଳି ଯାଇଥାନ୍ତା ।

ତେଣୁ ଇତିହାସରେ ପରିସ୍ଥିତି ବା ଅର୍ଥନୈତିକ ବ୍ୟବସ୍ଥାକୁ ଏତେ ମୂଲ୍ୟ ଦେବା ଉଚିତ ନୁହେଁ । ସାମାନ୍ୟ ସାମାନ୍ୟ ଘଟଣା ମହାଭାରତ ସୃଷ୍ଟି କରିବା କଥା କାହାକୁ ଅବିଦିତ ନାହିଁ । ମନୁଷ୍ୟ ସବୁବେଳେ ଖାଲି ପେଟ ପାଟଣା କଥା ଚିନ୍ତା କରେ ନାହିଁ । ଯେଉଁ କମ୍ୟୁନିଷ୍ଟମାନେ ମାର୍କସଙ୍କର ବସ୍ତୁବାଦର ପୂଜା କରୁଛନ୍ତି, ସେମାନେ ନିଜ ଜୀବନରେ ବସ୍ତୁବାଦର ଅସତ୍ୟତା ପ୍ରମାଣ କରି ଦେଉଛନ୍ତି । ସେମାନେ ନିଜେ ଯେତେବେଳେ ଆଦର୍ଶ ପାଇଁ ଲଢ଼େଇ କରୁଛନ୍ତି ଅନ୍ୟମାନେ ନକରିବେ କାହିଁକି ?

ଇତିହାସ ଯେତେବେଳେ ମନୁଷ୍ୟର କାହାଣୀକୁ ଲିପିବଦ୍ଧ କରେ, ସେତେବେଳେ ସବୁ କଥାକୁ ଏକା ସଙ୍ଗରେ ନେଇ ଚଳେ । ଅନ୍ୟ ଅର୍ଥରେ ଇତିହାସ ସୃଷ୍ଟି ପାଇଁ କୌଣସି ଗୋଟିଏ କାରଣ ନାହିଁ—ଅନେକ କାରଣର ସମାବେଶରେ ଇତିହାସର ସୃଷ୍ଟି ହୁଏ । ତେଣୁ ମାର୍କସଙ୍କର ଐତିହାସିକ ବସ୍ତୁବାଦ ଭୁଲ ନହେଲେ ବି ସମ୍ପୂର୍ଣ୍ଣ ଠିକ୍ ବୋଲି କୁହାଯାଇ ପାରେନାହିଁ ।

ଦ୍ୱିତୀୟରେ ଆମେ ମାର୍କସଙ୍କର ଶ୍ରେଣୀ ସଂଗ୍ରାମ କଥା ଦେଖିବା । ମାର୍କସଙ୍କ ମତରେ ଶ୍ରେଣୀ ସଂଘର୍ଷ ଫଳରେ ଇତିହାସ ସୃଷ୍ଟି ହୁଏ । କମ୍ୟୁନିଷ୍ଟ ମାନିଫେଷ୍ଟୋରେ ମାର୍କସ ଲେଖିଛନ୍ତି—

**"The history of all hitherto existing society is the history of class struggles."**

ଅର୍ଥାତ ଭଲ ଭଲ ଅର୍ଥନୈତିକ ଶ୍ରେଣୀ ଭିତରେ ଯେଉଁ ସଂଘର୍ଷ ସୃଷ୍ଟି ହୋଇଛି ତା ଫଳରେ ଇତିହାସର ପରିବର୍ତ୍ତନ ହୋଇଛି । ଏହିଠି ମାର୍କସ ହେଗେଲଙ୍କର ଦ୍ୱନ୍ଦ୍ୱମୂଳକ ମତର ଅନୁପ୍ରୟୋଗ କରନ୍ତି । ଦୁଇଟି ପରସ୍ପର ବିରୋଧୀ ଜନସମର ସଂଘର୍ଷରେ ଏକ ନୂତନ ଜନସମର ଅବତୀର୍ଣ୍ଣ ହୋଇଛି । ପ୍ରାଚୀନକାଳେ ଦାସତ୍ୱ ପ୍ରଥା ଥିଲା. ସେତେବେଳେ ଦାସ ଓ ଦାସର ମାଲିକ ଏମାନେ ଦୁଇଟି ବିରୋଧୀ ଅର୍ଥନୈତିକ ଶ୍ରେଣୀ ସୃଷ୍ଟି ହେଲେ । ସେମାନଙ୍କ ଭିତରେ ସଂଘର୍ଷ ହେଲା । ଫଳରେ ସାମନ୍ତବାଦର ଆବିର୍ଭାବ ହେଲା । ଦାସତ୍ୱ ପ୍ରଥାଠାରୁ ସାମନ୍ତବାଦ ଅନେକ ଗୁଣରେ ଶ୍ରେୟସ୍କର ବୋଲି ବିବେଚିତ ହେଲା । ପୁଣି ସାମନ୍ତବାଦରେ ଦୁଇଟି ବିରୋଧୀ ଦଳ ସୃଷ୍ଟି ହେଲେ—ଗୋଟିଏ ପଟେ ରଜା ଏବଂ ଜମିଦାର ଓ ଅନ୍ୟପଟେ ପ୍ରଜାକୁଳ । ଏମାନଙ୍କ ଭିତରେ ସଂଘର୍ଷ ଆସିଲା । ଏହି ସଂଘର୍ଷରୁ ସାମନ୍ତବାଦ ଲୋପ ପାଇଲା । ତା'ଜାଗାରେ ପୁଞ୍ଜିବାଦ ପ୍ରତିଷ୍ଠିତ ହେଲା । ପୁଣି ପୁଞ୍ଜିବାଦରେ ଦୁଇଟି ବିରୋଧୀ ଶ୍ରେଣୀ ସୃଷ୍ଟି ହେବ । ପୁଞ୍ଜିପତି ଓ ସର୍ବହରା । ସେମାନଙ୍କ ଭିତରେ ସଂଘର୍ଷ ଆସିବ । ଏହି ସଂଘର୍ଷ ପରେ ସାମ୍ୟବାଦ ପ୍ରତିଷ୍ଠିତ ହେବ । ସାମ୍ୟବାଦ ଶ୍ରେଣୀହୀନ ସମାଜ ପ୍ରତିଷ୍ଠା କରିବ । ତେଣୁ ଆଉ ସଂଘର୍ଷର ଅବକାଶ ରହିବ ନାହିଁ ।

ମାର୍କସ ଓ ଏଙ୍ଗେଲସ ଆହୁରି ମଧ୍ୟ କହନ୍ତି ଯେ, ଏଣିକି ଆଉ ଦେଶ ଓ ଦେଶ ମଧ୍ୟରେ ସଂଘର୍ଷ ହେବନାହିଁ । ସର୍ବହରାମାନଙ୍କର କୌଣସି ଦେଶ ନାହିଁ । ସମୁଦାୟ ପୃଥିବୀରେ ସେମାନେ ଏକ ଶ୍ରେଣୀ ରୂପରେ ଗଠିତ । ପୁଣି ପୁଞ୍ଜିବାଦର କ୍ରମ ବିକାଶ ଫଳରେ ଜାତୀୟ ଦ୍ୱନ୍ଦ୍ୱ ଦିନକୁ ଦିନ କମିବାରେ ଲାଗିଛି । ଶିଳ୍ପ ବାଣିଜ୍ୟର ଉନ୍ନତି, ଉତ୍ପାଦନ ପ୍ରଣାଳୀର ଏକତା,

ଜୀବନ ଧାରଣ ପନ୍ଥାର ସମତା ସମୁଦାୟ ପୃଥିବୀକୁ ଏକ ଭାବରେ ଗଢ଼ିଛି। ତେଣୁ ଦେଶ ଓ ଦେଶ ଭିତରେ ଫରକ ତିଷ୍ଠି ରହି ପାରୁନାହିଁ। କିନ୍ତୁ ପୁଞ୍ଜିବାଦ ଅର୍ଥନୀତି ଫଳରେ ସମୁଦାୟ ପୃଥିବୀ ପୁଞ୍ଜିପତି ଓ ସର୍ବହରା ନାମକ ଦୁଇଟି ଶ୍ରେଣୀରେ ବିଭକ୍ତ ହୋଇ ପଡ଼ିଛି। ତେଣୁ ଏଣିକି ସଂଘର୍ଷ ଦେଶ ଓ ଦେଶ ଭିତରେ ନ ହୋଇ ପୁଞ୍ଜିପତି ଓ ସର୍ବହରା ମାନଙ୍କ ଭିତରେ ସୃଷ୍ଟି ହେବ। ମାର୍କସ ଏକଥା ଲେଖିବାର ଅନେକ ଶହ ବର୍ଷ ହେଲାଣି। ଏହି ଶହେବର୍ଷ ଭିତରେ ଜାତୀୟ ସଂଘର୍ଷ ବଢ଼ିଛି କମିନାହିଁ। ପୁଞ୍ଜିବାଦ ଅର୍ଥନୀତି ଦୁର୍ବଳ ହୋଇଛି ସତ ଖସିଯାଇନାହିଁ। ଏକଥା ସତ୍ୟ ଯେ ପୁଞ୍ଜିବାଦ ଅର୍ଥନୀତି ଅନେକ ନୂଆ ରୂପ ଗ୍ରହଣ କରିନେଇଛି। ଅର୍ଥନୈତିକ ଯୋଜନା ସାମ୍ୟବାଦର ଜନ୍ମନ। କିନ୍ତୁ ଏବେ ପୁଞ୍ଜିବାଦ ଅର୍ଥନୀତିରେ ଏହା ଯୋଗ ହୋଇଗଲାଣି। ମାର୍କସଙ୍କ ବ୍ୟାଖ୍ୟା ଅନୁସାରେ ପୁଞ୍ଜିବାଦ ଅର୍ଥନୀତିରେ ମାଲିକ ଓ ଶ୍ରମିକ ସମ୍ପର୍କ ତିକ୍ତ ହେବାର କଥା। ଆମେରିକାରେ ପୁଞ୍ଜିବାଦ ଅଛି ବୋଲି ଆମେ ସମସ୍ତେ ଜାଣୁ। କିନ୍ତୁ ସେଠି ମାଲିକ ଓ ଶ୍ରମିକ ସମ୍ପର୍କ ତିକ୍ତ ହୋଇନାହିଁ। ବରଂ ସେଠି ବେଶୀ ସହଯୋଗ ରହିଛି।

ପ୍ରକୃତ କଥା ଯେ, ସଂଘର୍ଷ ଜୀବନର ଏକମାତ୍ର ଧାରା ନୁହେଁ। ସାମାଜିକ ଜୀବନ ସହଯୋଗରେ ପରିଚାଳିତ ହୁଏ। ଅର୍ଥନୈତିକ ଜୀବନ ସହଯୋଗ ଦ୍ୱାରା ତିଷ୍ଠି ରହେ। ଆମ ଦେଶର କୃଷିକଥା ଦେଖାଯାଉ। ଏ ତ ଆମର ପ୍ରଧାନ ବ୍ୟବସାୟ। ଏଥିରେ ଜମି ମାଲିକ ଅଛନ୍ତି ଓ ଜମିହୀନ କୃଷୀ ଅଛନ୍ତି—ଯାହାଙ୍କୁ ଆମେ ମୂଲିଆ ବୋଲି କହୁଁ। ଗାଁ ଗଣ୍ଡାରେ ଜମି ମାଲିକ ଓ ମୂଲିଆଙ୍କ ଭିତରେ କେତେ ଥର ସଂଘର୍ଷ ହେଉଛି ? ଯଦି ସଂଘର୍ଷ ହେଲେ ବାକି ୩୬୪ ଦିନ

ସହଯୋଗ କରିପାରନ୍ତି । କୃଷିକ୍ଷେତ୍ର ଶିଳ୍ପରୁ ଅଧିକେ ଏଥି ନୂଆ ସହଯୋଗ ଦେଖିବାକୁ ମିଳିବ । ବିନା ସହଯୋଗରେ ଆଉ ବଡ ବଡ ଧରଣର ଶିଳ୍ପ ଓ ବ୍ୟବସାୟ ଚାଲିପାରନ୍ତା ନାହିଁ । ଏଥିରେ ଶ୍ରମିକ ଅଛନ୍ତି, ଫଣୀଦାର ଅଛନ୍ତି, ପରିଚାଳକ ଅଛନ୍ତି । ଏମାନେ ସମସ୍ତେ ମିଳାମିଶି କାମ କରୁଛନ୍ତି ବୋଲି ଶିଳ୍ପ କାର୍ଯ୍ୟକାରୀ ହେଉଛି ବ୍ୟବସାୟ ଚାଲୁଛି ।

ମାର୍କସ ଏହି ଶ୍ରେଣୀ ସଂଘର୍ଷ ଆଲୋଚନା ବେଳେ ଧରିଲେ ଯେ, ସର୍ବହରାମାନଙ୍କ ଭିତରେ ଏକତା ଅଛି । ପୃଥିବୀରେ ଯେ ଯେଉଁଠାରେ ସର୍ବହରା ଅଛନ୍ତି, ସମସ୍ତେ ଏକା ଦଳର । ଏମାନଙ୍କ ଭିତରେ କୌଣସି ଫରକ ନାହିଁ । କିନ୍ତୁ ଭିନ୍ନ ଭିନ୍ନ ଦେଶ କଥା ଦୂରେ ଥାଉ, ଏକ ଦେଶରେ ଥିବା ସର୍ବହରାମାନଙ୍କ ଭିତରେ ମଧ୍ୟ ଏକତା ନାହିଁ । ଜାତି, ଧର୍ମ, ମତବାଦ ନେଇ ଯେଉଁ ସବୁ ଫରକ ଅଛି, ତାହା ଯେ କୌଣସି ଶ୍ରମିକ ଅନୁଷ୍ଠାନର କାର୍ଯ୍ୟ ଦେଖିଲେ ଜଣାପଡ଼ିବ । ଏକତା ଥିଲେ ଏତେ ପ୍ରକାର ଶ୍ରମିକ ଅନୁଷ୍ଠାନ ସୃଷ୍ଟି ହୋଇଥାନ୍ତା କାହିଁକି ? ବୋର୍ଜୁଆ ସର୍ବହରା ଓ ସର୍ବହରା ମଧ୍ୟରେ ଯେତେ ସଂଘର୍ଷ ହେଉଛି; ସର୍ବହରା ଓ ପୁଞ୍ଜିପତି ମଧ୍ୟରେ ସେତେ ସଂଘର୍ଷ ସୃଷ୍ଟି ହେଉନାହିଁ । ଦ୍ୱିତୀୟରେ ମାର୍କସ ଭାବିଲେ ଯେ ସର୍ବହରା ଦଳ କେବଳ ପେଟପାଟଣା ଛଡ଼ା ଆଉ କିଛି ଚିନ୍ତା କରନ୍ତି ନାହିଁ । ଅଜ୍ଞାନ ମୂର୍ଖ ପ୍ରତ୍ୟେକ ଲୋକଙ୍କୁ ଏକ ଏକ ଅର୍ଥନୈତିକ ଲୋକ ଭାବରେ ବିଚାର କରୁଥିଲେ । ମାର୍କସ ସମ୍ପ୍ରଦାୟ ସର୍ବହରା ଦଳକୁ ଏକ ବୋଲି ଭାବି ସମସ୍ତଙ୍କୁ ଏକ ଅର୍ଥନୈତିକ ଲୋକ ବୋଲି ଧରିନେଲେ । ସୁତରାଂ ଏ ସିଦ୍ଧାନ୍ତକୁ ଗ୍ରହଣ କରିବା ଏବେ ଆଉ ପ୍ରୟୋଜନ ନାହିଁ । ତୃତୀୟରେ ପୁଞ୍ଜିବାଦ

ଅର୍ଥନୀତିରେ କେବଳ ଦୁଇଟି ଶ୍ରେଣୀ ଅଛନ୍ତି ଓ ସେମାନଙ୍କ ମଧ୍ୟରେ ସଂଘର୍ଷ ହେବ ବୋଲି ମାର୍କସ ଯାହା କହୁଥିଲେ, ତାହା ମଧ୍ୟ ଇତିହାସ ଦ୍ୱାରା ଅପ୍ରମାଣ କରି ଯାଉଛି ।

ଶ୍ରେଣୀ ସଂଘର୍ଷ ଅନିବାର୍ଯ୍ୟ ବୋଲି ମାର୍କସ ସିଦ୍ଧାନ୍ତ କରି ଯାଇଛନ୍ତି । ଏହି ସିଦ୍ଧାନ୍ତ ମୂଳରେ ମଣିଷ ଜାତି ପ୍ରତି ଅବିଶ୍ୱାସ ପୁଣି ଅଛନ୍ତି । ସବୁ ବୁର୍ଜୁଆ ଖରାପ ନୁହଁନ୍ତି କି ସବୁ ସର୍ବହରା ଭଲ ନୁହଁନ୍ତି । ମଣିଷ ସବୁଠାରେ ଭଲ ଅଛି, ମନ୍ଦ ଅଛି । ଶ୍ରେଣୀ ଅନୁସାରେ ଭଲମନ୍ଦ କରାଯାଇପାରେନାହିଁ । ମାର୍କସ ସର୍ବହରା ଶ୍ରେଣୀକୁ ଆଦର୍ଶ ଓ ବୁର୍ଜୁଆ ଶ୍ରେଣୀକୁ ଖରାପ ଦୃଷ୍ଟିରେ ବିଚାର କରନ୍ତି । ତେଣୁ ମାର୍କସଙ୍କ ତତ୍ତ୍ୱରେ ଶ୍ରେଣୀସଂଘର୍ଷ ଏତେବଡ଼ ସ୍ଥାନ ପାଇଛି । ମାର୍କସ ଅର୍ଥନୀତି ଉପରେ ଜୋର ନ ଦେଇ ମନୁଷ୍ୟର ଚରିତ୍ର ସମ୍ବନ୍ଧରେ ଅଧିକ ଆଲୋଚନା କରିଥିଲେ, ଏତେ ଭୁଲ ସିଦ୍ଧାନ୍ତରେ ପହଞ୍ଚି ଯାଇ ନ ଥାନ୍ତେ । ଏହି ସିଦ୍ଧାନ୍ତ ଗଳ୍ପ ଏବଂ ମାମୁଲି ସିଦ୍ଧାନ୍ତ ନୁହେଁ—ଏହା ଫଳରେ ଇତିହାସର ଗତି ମଧ୍ୟ ବଦଳି ଯାଇଛି । ଏଙ୍ଗେଲସଙ୍କ ଭାଷାରେ କାର୍ଲ ମାର୍କସ ଇତିହାସକୁ ଶ୍ରେଣୀ ସଂଘର୍ଷରେ ଅର୍ଥ କରି ଇତିହାସରେ ଶ୍ରେଣୀ ସଂଘର୍ଷ ଲଗାଇଦେଇ ଯାଇଛନ୍ତି ।

କେବଳ ସେତିକି ନୁହେଁ । ମାର୍କସ ସ୍ପଷ୍ଟ କହୁଛନ୍ତି ଯେ, ଏହି ଶ୍ରେଣୀ ସଂଘର୍ଷ ହିଂସାର ବାଟ ଅନୁସରଣ କରିବ । କୌଣସି ଶ୍ରେଣୀ ନିଜ ମନ ଇଚ୍ଛାରେ ନିଜର କ୍ଷମତା ଛାଡ଼ିବା ସମ୍ଭବ ନୁହେଁ । ତେଣୁ କୌଣସି ଶ୍ରେଣୀକୁ କ୍ଷମତାରୁ ଅନ୍ତର କରିବାକୁ ହେଲେ ହିଂସାର ବାଟରେ ଅଗ୍ରସର ହେବା ଆବଶ୍ୟକ । କିନ୍ତୁ ମାର୍କସଙ୍କ ସମୟଠାରୁ ଇତିହାସରେ ଯେଉଁ ପରିବର୍ତ୍ତନ ହୋଇଛି, ସେଥିରେ

ଯେଉଁବେଳେ ରକ୍ତାକ୍ତ ବିପ୍ଳବର ଆବଶ୍ୟକତା ପଡ଼ୁ ନାହିଁ । ଭାରତ ଇଂଲଣ୍ଡଠାରୁ ସ୍ୱାଧୀନତା ପାଇଲା । କିନ୍ତୁ ରକ୍ତର ନଦୀ ବୋହିଲା ନାହିଁ । ଭାରତରେ ଜନସାଧାରଣ କଂଗ୍ରେସ ସରକାର ଅମଳରେ ସାବାଳକ ଭୋଟ ଅଧିକାର ପାଇଲେ । ଏଥିପାଇଁ ଲଢ଼େଇ କରିବା ଦରକାର ପଡ଼ିଲା ନାହିଁ । ଇଂଲଣ୍ଡରେ ସେହିପରି ଲୋକମାନଙ୍କୁ ଭୋଟ ଅଧିକାର ବିନା ରକ୍ତପାତରେ ମିଳିଅଛି । ନରୱେ ସୁଇଡେନଠାରୁ ସ୍ୱାଧୀନତା ପାଇଛି । କିନ୍ତୁ ସେଥିପାଇଁ ଯୁଦ୍ଧ କରିବା ଦରକାର ପଡ଼ି ନାହିଁ । ଇତିହାସରେ ବିପ୍ଳବ ହୋଇ ଅଧିକାର ହାସଲ ହୋଇଛି । ରାଜାମାନେ ସବୁ ଅଧିକାର ଦେଲେଣି । ତେଣୁ ରକ୍ତାକ୍ତ ବିପ୍ଳବକୁ ଅପରିହାର୍ଯ୍ୟ ବୋଲି ଧରିନେବା ଠିକ୍ ନୁହେଁ । ପୁଞ୍ଜିବାଦ ପରିବର୍ତ୍ତରେ ସାମ୍ୟବାଦ ଯଦି ବିନା ରକ୍ତପାତରେ ସମ୍ଭବ ହୋଇପାରେ, ତାହେଲେ ସର୍ବହରାର ଏକଛତ୍ର ଶାସନ ମଧ୍ୟ ଅନାବଶ୍ୟକ ବୋଲି ବୁଝାଯିବ । ଇଂଲଣ୍ଡର ପୁଞ୍ଜିବାଦ ଅର୍ଥନୀତିକୁ ଗଣତାନ୍ତ୍ରିକ ଉପାୟରେ ସାମ୍ୟବାଦ ଦିଗରେ ପରିବର୍ତ୍ତନ କରାଯାଉ ଅଛି । ଏକଛତ୍ର ଶାସନ ଦରକାର ପଡ଼ୁନାହିଁ । ପ୍ରକୃତରେ ଏକଛତ୍ର ଶାସନ କେବଳ ଅନାବଶ୍ୟକ ତା ନୁହେଁ, ଏକଛତ୍ର ଶାସନ ଫଳରେ ସାମ୍ୟବାଦ ଓ ଶ୍ରେଣୀହୀନ ସମାଜ ମଧ୍ୟ ପ୍ରତିଷ୍ଠିତ ହୋଇ ପାରିବ ନାହିଁ ।

ଏକଛତ୍ର ଶାସନ ଅର୍ଥ ସର୍ବହରାର ଏକଛତ୍ର ଶାସନ । ସର୍ବହରା ଦଳ ଶାସନ ଅଧିକାର ନେଇ ଏକଛତ୍ର ଶାସନ ପ୍ରତିଷ୍ଠା କରିବେ । ଅନ୍ୟ ଶ୍ରେଣୀମାନଙ୍କର ଶାସନରେ କିଛି ଅଧିକାର ରହିବ ନାହିଁ । ସର୍ବହରାର ଏକଛତ୍ର ଶାସନ ଫଳରେ ଅନ୍ୟ ଶ୍ରେଣୀମାନେ ଲୋପ ପାଇବେ—ତେବେ ଯାଇଁ ଏକ ଶ୍ରେଣୀହୀନ

ସମାଜ ପ୍ରତିଷ୍ଠା ହୋଇ ପାରିବ । ଦ୍ୱିତୀୟତଃ ସର୍ବହରାର ପ୍ରତିନିଧି ହିସାବରେ କମ୍ୟୁନିଷ୍ଟ ପାର୍ଟି ଏକଛତ୍ର ଶାସନ ପରିଚାଳନା କରିବେ । ଏହି ସୂତ୍ରରେ ଦୁଇଟି ଭୁଲ ଥିବାର ଜଣାଯାଏ । ପ୍ରଥମ ସବୁ ସର୍ବହରା ଏକରକମ ଭାବନ୍ତି ନାହିଁ । ତେଣୁ ସବୁ ସର୍ବହରାଙ୍କୁ ଏକ କରି ଭାବିବା ଠିକ ନୁହେଁ । ସର୍ବହରାମାନଙ୍କ ଭିତରେ ମଧ୍ୟ ଭିନ୍ନ ଭିନ୍ନ ରାଜନୈତିକ ଦଳ ପ୍ରତିଷ୍ଠିତ ହୋଇ ପାରେ । ରୁଷିଆରେ କମ୍ୟୁନିଷ୍ଟ ପାର୍ଟି ଯେତେବେଳେ ଅଧିକାରକୁ ଆସିଲା ସେତେବେଳେ ଅନ୍ୟ ଦୁଇଟି ଶ୍ରମିକ ଦଳକୁ ଧ୍ୱଂସ କରି କ୍ଷମତା ହାସଲ କଲେ । ବଲସେଭିକ ପାର୍ଟି, ମେନସେଭିକ ପାର୍ଟି ଓ ସୋସିଆଲ ରେଭୋଲ୍ୟୁସନାରୀ ପାର୍ଟି ଭିତରେ ମତଭେଦ ନେଇ କୌଣସି ଫଳ ନ ଥିଲା । ପ୍ରତ୍ୟେକ ଦେଶରେ ଏବେ ବି ଭିନ୍ନ ଭିନ୍ନ ଶ୍ରମିକ ଦଳ ଅଛନ୍ତି । ଆମ ଦେଶରେ ସାମ୍ୟବାଦୀ ଦଳ ଓ କମ୍ୟୁନିଷ୍ଟ ଦଳ ଶ୍ରମିକ ଦଳ ବୋଲି ପରିଚୟ ପାଉଛନ୍ତି । ଶ୍ରେଣୀ ସଂଘର୍ଷ ଅନୁସାରେ ପୁଞ୍ଜିପତିମାନଙ୍କୁ ଧ୍ୱଂସ କରିବାର କଥା । କିନ୍ତୁ ଶ୍ରମିକ ରାଜନୈତିକ ଦଳ ମାନଙ୍କୁ ଧ୍ୱଂସ କରିବା କଥା ନୁହେଁ । ସାମ୍ୟବାଦରେ କୌଣସି ପ୍ରକାର ବିଭେଦ ନାହିଁ ବୋଲି କହିବା ଅଜ୍ଞତା ଛଡ଼ା ଆଉ କିଛି ନୁହେଁ । ରୁଷିଆର ଇତିହାସର ଅଧ୍ୟୟନ କଲେ ଏହାର ଯଥେଷ୍ଟ ଉଦାହରଣ ମିଳିବ । ଲେନିନଙ୍କ ମୃତ୍ୟୁ ପରେ ୧୯୨୪ ମସିହାରେ ଷ୍ଟାଲିନ ଓ ଟ୍ରଟସ୍କିଙ୍କ ଭିତରେ ମତଦ୍ୱୈଧ ହେଲା । ଟ୍ରଟସ୍କି ବିତାଡ଼ିତ ହେଲେ । ଷ୍ଟାଲିନ ରୁଷିଆରେ ସାର୍ବଭୌମ ଅଧିକାର ବିସ୍ତାର କଲେ । ଷ୍ଟାଲିନଙ୍କ ମୃତ୍ୟୁ ପରେ ପୁଣି ମାଲେନକୋଭ ଓ ବେରିଆଙ୍କ ଭିତରେ ସଂଘର୍ଷ ସୃଷ୍ଟି ହେଲା । ବେରିଅଙ୍କୁ ତେଣୁ ଫାଶୀ କାଠରେ ଝୁଲିବାକୁ ପଡ଼ିଲା । ତେଣୁ ସାମ୍ୟବାଦ ଭିତରେ ବି ସଂଘର୍ଷ ଅଛି । ଯୁଗୋସ୍ଲାଭିଆ ଓ ରୁଷିଆ

ହିବସ୍ତୁ ସାମ୍ୟବାଦର ପକ୍ଷପାତୀ । କିନ୍ତୁ ଏବେ ଦୁଇ ଦେଶ ଭିତରେ ସଂଯୋଗ ନାହିଁ । ତେଣୁ ସବୁ ସରକାରଙ୍କୁ ଏକ କରି ସବୁ ସରକାରର କମ୍ୟୁନିଷ୍ଟ ପାର୍ଟି ପ୍ରତିନିଧି ବୋଲି ଭାବିବା ନ୍ୟାୟତଃ ଠିକ୍ ନୁହେଁ । ଦ୍ୱିତୀୟରେ କମ୍ୟୁନିଷ୍ଟ ପାର୍ଟି ପଛରେ ଯଦି ସର୍ବୋଧ ଅଛନ୍ତି ଏବଂ କମ୍ୟୁନିଷ୍ଟ ପାର୍ଟି ଯଦି ସରକାରରେ ସମର୍ଥନ ପାଇ କ୍ଷମତାକୁ ଆସିଛନ୍ତି, ତା'ହେଲେ ଅନ୍ୟାନ୍ୟ ଶ୍ରମିକ ରାଜନୀତିକ ଦଳଙ୍କୁ ସ୍ୱାଧୀନତା ଦିଆଯାଉ ନାହିଁ କାହିଁକି ? ଯେଉଁମାନେ ରାଜନୀତିକ ବିରୋଧୀଙ୍କୁ ପ୍ରଶ୍ରୟ ଦେଲେ କ୍ଷମତାରେ ରହି ପାରିବେ ନାହିଁ, ସେମାନେ କେବଳ ରାଜନୀତିକ ବିରୋଧକୁ ଦମନ କରିବାକୁ ଚେଷ୍ଟା କରନ୍ତି । ଯେଉଁମାନଙ୍କ ପଛରେ ସରକାରର ସମର୍ଥନ ଅଛି, ସେମାନେ କାହିଁକି ବିରୋଧକୁ ବାଦ ଦେଉଛନ୍ତି ?

ପୁଣି ଏକଛତ୍ର ଶାସନ ଫଳରେ ଏକ ନ୍ୟାୟ ସମାଜ ପ୍ରତିଷ୍ଠା ହୋଇ ପାରିବ ବୋଲି ଭାବିବା ମଧ୍ୟ ଠିକ୍ ନୁହେଁ । କାରଣ ଏକଛତ୍ର ଶାସନ ଘୃଣାରୁ ଜାତ ହୁଏ ଓ ଅତ୍ୟାଚାରରେ ତିଷ୍ଠି ରହେ । ସାଧାରଣତଃ ଏକ ସଂଘର୍ଷ ପରେ ଏକଛତ୍ର ଶାସନ ପ୍ରତିଷ୍ଠା ହୁଏ । ଯେଉଁମାନେ ସଂଘର୍ଷ କରି କ୍ଷମତାକୁ ଆସନ୍ତି, ସେମାନେ ଅତ୍ୟାଚାର କରି କ୍ଷମତାକୁ ହାତରେ ରଖନ୍ତି । ତେଣୁ ଏକଛତ୍ର ଶାସନରେ ଅନ୍ୟର ଅଧିକାର ଉପରେ ଆକ୍ରମଣ କରିବା ସ୍ୱାଭାବିକ । ଗଣତାନ୍ତ୍ରିକ ଶାସନରେ ଶାନ୍ତି ଉପାୟରେ କ୍ଷମତା ହସ୍ତାନ୍ତର ହୁଏ । ଗତ ଯୁଦ୍ଧବେଳେ ଚର୍ଚ୍ଚିଲଙ୍କ ନେତୃତ୍ୱ ଇଂଲଣ୍ଡକୁ ଜର୍ମାନୀ ଆକ୍ରମଣରୁ ରକ୍ଷା କରି ପାରିଥିଲା । ଯୁଦ୍ଧ ସରିଲା । ଆଉ ଥରେ ନିର୍ବାଚନ ହେଲା । ଚର୍ଚ୍ଚିଲ ଦଳ ହାରିଗଲେ । ଶ୍ରମିକ ଦଳ କ୍ଷମତାକୁ ଆସିଲେ । ସେମାନେ ଚର୍ଚ୍ଚିଲଙ୍କୁ ଜେଲକୁ ପଠାଇଲେ ନାହିଁ । ଅବ ୫ ବର୍ଷ

ତେବେ ପୁଣି ଯେତେବେଳେ ଶାସନ ଭାର ନେଲେ, ଚର୍ଚ୍ଚିଲ୍ ପୁଣି ଗମରାଙ୍କୁ ଡାକିଲେ । ଶାନ୍ତି ଉପାୟରେ କ୍ଷମତା ଅଧିକାର କରିବାର ସୁବିଧା ଥିବାରୁ ପରନ୍ତୁ ଶ୍ରମିକ ଦଳ ହାତରେ ଅର୍ପଣ କରିବା ଦରକାର ପଡ଼ିନାହିଁ । ସହଯୋଗରେ ଶାସନ ଚାଲେ । କିନ୍ତୁ କେତେକ ଶାସନ ଅବିଶ୍ୱାସ ଓ ସନ୍ଦେହରେ ଚାଲେ ।

ଅନେକ ଲୋକେ ଭାବନ୍ତି ଯେ ସେମାନଙ୍କ ଯଦି ସେମାନଙ୍କ ମତ ପ୍ରକଟ କରିବାକୁ ଅଧିକାର ଦିଆଯାଏ ଓ ବିରୋଧୀ ମତ ଦବାଇବା ପାଇଁ ସୁଯୋଗ ମିଳେ, ତା'ହେଲେ ସେମାନେ ଏକ ଧରାରେ ଏକ ସ୍ୱର୍ଗ ପ୍ରତିଷ୍ଠା କରିପାରିବେ । କିନ୍ତୁ ଏକଥା ଠିକ୍ ନୁହେଁ । ସାମାଜିକ ଜୀବନ ସହଯୋଗର ଜୀବନ । ଭଲ ଲୋକ ମତରେ ସହଯୋଗ ଆଣି ଏକ ସମନ୍ୱୟ ସୃଷ୍ଟି କରିବା ସାମାଜିକ ଜୀବନର ଲକ୍ଷ୍ୟ । କୋଟିଏ ଦଳକୁ ଦଳିଦେଲେ ନ୍ୟାୟ ଆସିବ ନାହିଁ । ବରଂ ଅନ୍ୟାୟ ବଢ଼ିବ, ଘୃଣା ବଢ଼ିବ. ପରସ୍ପର ଅବିଶ୍ୱାସ ଗୋଷ୍ଠି ମିଳିବ । ତେଣୁ ଏକଚ୍ଛତ୍ର ଶାସନ ଦ୍ୱାରା ଏକ ନ୍ୟାୟପୂର୍ଣ୍ଣ ସମାଜ ପ୍ରତିଷ୍ଠା ହେବ ବୋଲି ଭାବିବା ଅତୀତ ଭୁଲ ଦୋହରାଇବା ଛଡ଼ା ଅନ୍ୟ କିଛି ନୁହେଁ ।

---

# କମ୍ୟୁନିଜିମ୍

ମାର୍କସ ବାଦ ଓ କମ୍ୟୁନିଜିମ୍ ମଧ୍ୟରେ ବେଶୀ କିଛି ପ୍ରଭେଦ ନାହିଁ । ମାର୍କସ ଓ ଏଞ୍ଜେଲସ୍ 'କମ୍ୟୁନିଷ୍ଟ ମାନିଫେଷ୍ଟୋରେ' ଯେଉଁ ଦର୍ଶନ ଅବତାରଣା କରିଥିଲେ, ସେହି ଦର୍ଶନକୁ ଭିତ୍ତି କରି କମ୍ୟୁନିଜିମ୍ ଗଢ଼ାଯାଇଛି । ଏଥିରେ ଲେନିନ୍ ଦୁଇ ତିନିକଥା ଯୋଡ଼ିଛନ୍ତି । ଲେନିନ୍ ମାର୍କସଙ୍କର ପ୍ରତ୍ୟେକ କଥାକୁ ସମ୍ମାନ ଦେଖାଇଛନ୍ତି । କିନ୍ତୁ ତା ସଙ୍ଗେ ଏକଥା ମଧ୍ୟ କହିଛନ୍ତି ଯେ ମାର୍କସବାଦ ଏକ ଜୀବନ୍ତ ତତ୍ତ୍ୱ । ତେଣୁ ଏଥିରେ ପରିବର୍ତ୍ତନ ହେବା ସ୍ୱାଭାବିକ । ସମାଜ ଯେପରି ପରିବର୍ତ୍ତିତ ହେଉଛି, ମାର୍କସବାଦ ମଧ୍ୟ ସେହିପରି ପରିବର୍ତ୍ତିତ ହେବ । ତେଣୁ ୧୮୪୮ ରେ ମାର୍କସ ଯାହା ଲେଖିଥିଲେ, ତାକୁ କାର୍ଯ୍ୟରେ ପରିଣତ କରିବାକୁ ନୂଆ ପନ୍ଥା ଆବଶ୍ୟକ ହୋଇପାରେ । ଦ୍ୱିତୀୟରେ ମାର୍କସ ପୁଞ୍ଜିବାଦର ଏକଚାଟିଆ ବାଣିଜ୍ୟ ଜାଣି ନଥିଲେ । ତେଣୁ ମାର୍କସଙ୍କର ଲେଖାରେ ସାମ୍ରାଜ୍ୟବାଦର ଅବତାରଣା ନାହିଁ । ଲେନିନ୍ ମାର୍କସଙ୍କ ନୀତିକୁ ସାମ୍ରାଜ୍ୟବାଦ କ୍ଷେତ୍ରରେ ପ୍ରୟୋଗ କରିବାକୁ ଚେଷ୍ଟା କରିଛନ୍ତି । ତୃତୀୟରେ ଲେନିନ ମାର୍କସଙ୍କ ଲେଖାର ବିପ୍ଳବାତ୍ମକ ଦିଗକୁ ବେଶୀ ଜୋର ଦେଇଛନ୍ତି । କେଉଁ ନୀତିରେ ଓ କି ପ୍ରକାର ଶ୍ରମିକମାନେ ସଙ୍ଘବଦ୍ଧ ବିପ୍ଳବ କରିବେ ଓ କେଉଁ ନୀତିରେ ଓ କି ପ୍ରକାର ଶ୍ରମିକମାନେ ସର୍ବହରା ଏକଛତ୍ର ଶାସନ ପ୍ରତିଷ୍ଠିତ କରିବେ—ତାହାହିଁ ଲେନିନଙ୍କର ପ୍ରଧାନ ଆଲୋଚ୍ୟ ବିଷୟ ଥିଲା । ମୋଟ ଉପରେ ଏହା ଜଣାପଡ଼ିବ ଯେ ଲେନିନ ମାର୍କସଙ୍କ ନୀତିକୁ ସାମ୍ରାଜ୍ୟବାଦ ଯୁଗରେ ପ୍ରୟୋଗ କରିଛନ୍ତି, ମାର୍କସଙ୍କ ଶିକ୍ଷାକୁ

ପରବର୍ତ୍ତୀ ଯୁଗର ଏକଛତ୍ରଶାସକଙ୍କୁ ବିଶେଷ ଟଙ୍କାର ଦେଉଛନ୍ତି ଓ ବିପ୍ଳବୀମାନଙ୍କ ପାଇଁ ବିପ୍ଳବଦାୟକାଣେ ଏକ ଦ୍ୱ୍ୟର୍ଥହୀନ ବର୍ଣ୍ଣ ଯୋଗାଉଛନ୍ତି । ମାର୍କସ ଓ ଲେନିନ୍ଙ୍କ ମତକୁ ଏବେ କେବଳ କମ୍ୟୁନିଜମ୍ ହେବ । ଏଥିରେ ଷ୍ଟାଲିନ ମଧ୍ୟ କିଛି ଯୋଗ କରିଛନ୍ତି ବୋଲି କୁହାଯାଇ ପାରେ । କାରଣ ମାର୍କସ ଓ ଲେନିନ୍ ପୃଥିବୀର ସର୍ବତ୍ର ଏକକାଳୀନ କମ୍ୟୁନିଷ୍ଟ ବିପ୍ଳବ ସେତେବେଳେ କଳ୍ପନା କରୁଥିଲେ, ଷ୍ଟାଲିନ୍ ଏକ ଦେଶରେ ବିପ୍ଳବ କଥା କହି ରୁଷିଆର ସାମ୍ୟବାଦୀ ବିପ୍ଳବକୁ ଶକ୍ତି-ଶାଳୀ କରିବାକୁ ଚେଷ୍ଟା କରିଥିଲେ । ଏହା ଫଳରେ କମ୍ୟୁନିଜମ୍ ଓ ଜାତିବାଦ ଏକତ୍ର ରହି ପାରିବ ବୋଲି ଘୋଷଣା କରାଗଲା । ମାର୍କସବାଦ ସମ୍ମତ ଏଥିରେ ବ୍ୟତିକ୍ରମ ରହିଲେ ବି, ପ୍ରୟୋଗ ଦୃଷ୍ଟିରୁ ଏହା ଠିକ୍ ବୋଲି ପ୍ରମାଣ କରିଗଲା । ତେଣୁ ଷ୍ଟାଲିନ୍ଙ୍କ କାଳେ କମ୍ୟୁନିଜମ୍ ଗମ୍ଭୀର ମଣିଷ । ଏବେ ଷ୍ଟାଲିନଙ୍କର ଉତ୍ତରାଧି-କାରୀମାନେ ଷ୍ଟାଲିନଙ୍କର ଏକ-ନେତା ନେତୃତ୍ୱ ପରିବର୍ତ୍ତରେ ବହୁ-ନେତା ନେତୃତ୍ୱ କଥା କହୁଛନ୍ତି । କାର୍ଯ୍ୟରେ ଅବଶ୍ୟ ତାହା ହେବ, ଦେଖିବାକୁ ବାକି ନାହିଁ । କାରଣ ଏହି ବହୁନେତା ଦଳରୁ ଜଣେ ବିଶିଷ୍ଟ ନେତା (ବେରିଆ) ମୃତ୍ୟୁ ମାଡ଼ରେ ଶାସିତ ହୋଇ ସାରିଲେଣି । ମାଲେନକୋଭଙ୍କ ଅବସ୍ଥା ସେ ଅଡ଼କୁ ଯାଉଛି । ତଥାପି ନୀତିଦୃଷ୍ଟିରୁ ଏହାକୁ କମ୍ୟୁନିଜମ୍ରେ ଯୋଗ କରାଯିବ । ଅର୍ଥାତ୍ ରୁଷିଆରେ କମ୍ୟୁନିଜମ୍ ଯେପରି ଭାବରେ ପ୍ରୟୋଗ ହେଉଥିବ, କମ୍ୟୁନିଜମ୍ର ଅର୍ଥ ସେହିପରି ବଦଳୁଥିବ । ରୁଷିଆରେ ଯେତେବେଳେ କମ୍ୟୁନିଜମ୍ ପରୀକ୍ଷା ହେଉଛି, ସେତେବେଳେ ଦେଶମାନଙ୍କ ପରୀକ୍ଷାକୁ କମ୍ୟୁନିଜମ୍ ନୀତିର ଏକ ଅଙ୍ଗ ବୋଲି ଧରିନେବାକୁ ହେବ । କମ୍ୟୁନିଜମ୍ ଏବେ ଜାତୀୟତାର ରୂପ ନେଇ । ଏହା ମଧ୍ୟ ଏକ ପ୍ରୟୋଗ ପନ୍ଥା । ଲେନିନ୍ଙ୍କ

ମତରେ ନୀତି ଓ ଧର୍ମ ସ୍ୱାର୍ଥ ଉତ୍ପାଦନ ସ୍ତରରେ କରୁଛି । ତେଣୁ ଏମାନଙ୍କୁ ନୀତି ଓ ଧର୍ମ ସ୍ତରର ଉପଯୋଗ କରି କମ୍ୟୁନିଜମ୍‌ର ସପକ୍ଷ କରିବାକୁ ପଡ଼ିବ ।

ଏପର୍ଯ୍ୟନ୍ତ କମ୍ୟୁନିଜମ୍‌ର ଆଦର୍ଶ କେଉଁଠାରେ କେବେହେଲେ ଫଳବତ୍ ହୋଇନାହିଁ । କମ୍ୟୁନିଜମ୍‌ର ଆଦର୍ଶ ଶ୍ରେଣୀହୀନ ସମାଜ । ଏହି ଶ୍ରେଣୀହୀନ ସମାଜ ପ୍ରତିଷ୍ଠା ହୋଇଗଲେ ରାଷ୍ଟ୍ରର ଦରକାର ପଡ଼ିବ ନାହିଁ (State will wither away) । କିନ୍ତୁ ଏହି ଶ୍ରେଣୀହୀନ ଓ ରାଷ୍ଟ୍ରହୀନ ସମାଜ ପ୍ରତିଷ୍ଠା କରିବାପାଇଁ ଏକ ମଧ୍ୟବର୍ତ୍ତୀ ଅବସ୍ଥା ଦେଇ ଯିବାକୁ ପଡ଼ିବ । ଏହି ମଧ୍ୟବର୍ତ୍ତୀ ଅବସ୍ଥାରେ ଶ୍ରମିକ ଶ୍ରେଣୀ ଏକଛତ୍ରଶାସନ ପ୍ରତିଷ୍ଠା କରି ଶ୍ରେଣୀହୀନ ସମାଜ ପ୍ରତିଷ୍ଠା କରିବାକୁ ଚେଷ୍ଟା କରନ୍ତି । କମ୍ୟୁନିଷ୍ଟମାନଙ୍କ ମତରେ ଗଣତାନ୍ତ୍ରିକ ଉପାୟରେ ଶ୍ରେଣୀହୀନ ସମାଜ ବା ସାମ୍ୟବାଦ ପ୍ରତିଷ୍ଠିତ ହୋଇପାରିବ ନାହିଁ । ପୁଞ୍ଜିବାଦ ସମାଜରେ ପୁଞ୍ଜିବାଦୀମାନେ ପାର୍ଲିଆମେଣ୍ଟକୁ କଣ୍ଟ୍ରୋଲ କରି ଥାଆନ୍ତି, ତେଣୁ ସେମାନଙ୍କୁ ଘାତରୁ ହଟାଇବା ବା କ୍ଷମତାରୁ ବିଚ୍ୟୁତ କରିବାପାଇଁ ପାର୍ଲିଆମେଣ୍ଟରେ ଆଇନ ହୋଇପାରିବ ନାହିଁ । ତେଣୁ ଅଚଳ [illegible] ସମାଜର ପରିବର୍ତ୍ତନ କଥା ନଭାବି, ବଳପ୍ରୟୋଗ ଦ୍ୱାରା ସମାଜର ପରିବର୍ତ୍ତନ କରିବାକୁ ହେବ । ସର୍ବହରା ଶ୍ରେଣୀ ହିଂସା ଉପାୟରେ ଯେ କ୍ଷମତା ଅଧିକାର କରନ୍ତି, ତାକୁ ହିଁ; ଏହି ହିଂସା ବଳରେ ହିଁ କ୍ଷମତା ଜାରି ରଖିବେ ସେଥିପାଇଁ ଲେନିନ୍ କହନ୍ତି—'The Party which has triumphed in the revolution is necessarily compelled to maintain its rule by means of that fear with which its arms inspire the

reactionaries' ଅର୍ଥାତ୍ ଯେଉଁ ସବୁ ଦଳ ବିପ୍ଳବରେ ଛିଡ଼ାଛନ୍ତି, ସେହି ଦଳ ଅନ୍ୟାନ୍ୟ ପ୍ରତିକ୍ରିୟାଶୀଳମାନଙ୍କ ସହ ମିଶିକରି ଶାସନ ଚଳାଉଥିବେ । ତେଣୁ ଏହି ମଧ୍ୟବର୍ତ୍ତୀ ଅବସ୍ଥାରେ କଣ୍ଠେନଙ୍କର ସ୍ଥାନ ରହିବ ନାହିଁ । ସବୁ ପ୍ରକାର ଦଳ ସରକାରରେ ସ୍ଥାନ ପାଇପାରିବେ ନାହିଁ । ସର୍ବହରା ଦଳ ସରକାର ଦଖଲ କରି ବଳାତ୍କାର ସାହାଯ୍ୟରେ ପୁଂଜିବାଦୀ ମାନଙ୍କୁ ଶାସନ କରିବେ । ତାପରେ ଯାଇଁ ସ୍ୱାଧୀନତା କଥା ଉଠିବ । ମଧ୍ୟବର୍ତ୍ତୀ ଅବସ୍ଥାରେ ନୁହେଁ । ତେଣୁ ଲେନିନଙ୍କ ମତରେ ସର୍ବହରାର ଏକଚ୍ଛତ୍ର ଶାସନ ପ୍ରତିଷ୍ଠା କରିବା ପାଇଁ ହିଂସା ଉପାୟରେ ପ୍ରଥମେ ଉଦ୍ୟମ କରାଯିବ ଓ ଏକଚ୍ଛତ୍ର ଶାସନ ପ୍ରତିଷ୍ଠା ହେଲାପରେ ହିଂସା ଉପାୟରେ ଶ୍ରେଣୀହୀନ ସମାଜ ପ୍ରତିଷ୍ଠା କରିବାକୁ ଯୋଗାଡ଼ କରାଯିବ ।

କମ୍ୟୁନିଷ୍ଟମାନଙ୍କ ଆଦର୍ଶ ନେଇ କାହାର ମତଦ୍ୱୈଧ ନାହିଁ । କିନ୍ତୁ କମ୍ୟୁନିଷ୍ଟମାନଙ୍କ ପନ୍ଥାକୁ ବହୁଥର ସମାଲୋଚନା କରାଯାଉଛି । କାରଣ କମ୍ୟୁନିଷ୍ଟମାନେ ଯେଉଁ ପନ୍ଥା ଅନୁସରଣ କରି, କମ୍ୟୁନିଜମ୍ ପ୍ରତିଷ୍ଠା କରିବାକୁ ଚାହାନ୍ତି, ତାହା କୌଣସି ନୀତି ଓ ସତ୍ୟ ନିଷ୍ଠ ଲୋକରେ ଗ୍ରହଣଯୋଗ୍ୟ, ନୁହେଁ । ସରକାରଙ୍କ ବିରୁଦ୍ଧରେ ଆନ୍ଦୋଳନ କରିବାକୁ ଯାଇ ରେଲ୍‌ଲାଇନ ତାର, ରେଲଗାଡ଼ି ଲେଉଟାଇବା ହଜାର ହଜାର ନିରୀହ ଜନସାଧାରଣଙ୍କର ଜୀବନ ବିପନ୍ନ କରିବା, ଅରାଜକତା ସୃଷ୍ଟି କରିବା ଉଦ୍ଦେଶ୍ୟରେ ଗାଁଗଣ୍ଡା ପୋଡ଼ି ଦେବ ସ୍ୱଳ୍ପ ମଜୁରିଆଙ୍କର ଘରଦ୍ୱାର ଧନସମ୍ପତ୍ତି ଲୁଟି କରିବା ଓ ଶିଶୁ ବାଳକଙ୍କର ପ୍ରାଣ ନାଶ କରିବା, ଶ୍ରେଣୀର ଦ୍ୱନ୍ଦ୍ୱ ସୃଷ୍ଟି କରି ଦେଶର ଶିକ୍ଷା ଓ ସଭ୍ୟତାକୁ ଜଳାଞ୍ଜଳି ଦେବା— ଏପରି ଯେ କୌଣସି ଗର୍ହିତ କାମ ଏମାନେ ନିଜର ନୀତି ପ୍ରତିଷ୍ଠା କରିବା ଦୃଷ୍ଟିରୁ ଖୁବ୍ ଅତି ସହଜରେ ଗ୍ରହଣ କରି ପାରନ୍ତି ।

କମ୍ୟୁନିଷ୍ଟ ନୀତିଦୃଷ୍ଟିରୁ ଏହା ମଧ୍ୟ ଗ୍ରହଣଯୋଗ୍ୟ । ମାର୍କସ ଓ ଲେନିନ୍ ଘୃଣା ଓ ସଂଘର୍ଷକୁ ମଞ୍ଜୁରି ଦେଇ ଯାଇଛନ୍ତି । ପ୍ରକୃତରେ କମ୍ୟୁନିଜିମ୍‌ରେ ଗରିବ ନିର୍ବୋଧ ବର୍ଗଙ୍କର ଦୁଃଖକଷ୍ଟ ପ୍ରତି ଯେତିକି ସ୍ନେହ ଓ ସହାନୁଭୂତି ନାହିଁ, ବିରୋଧ ଦଳ ପ୍ରତି ତାଠାରୁ ବେଶୀ ଘୃଣା ଅଛି । ଏମାନେ ଘୃଣାର ବଶବର୍ତ୍ତୀ ହୋଇ କାମ କରନ୍ତି । ତେଣୁ ପରିବାରଙ୍କ ବିରୁଦ୍ଧରେ ସଂଘର୍ଷ କରିବା ବା ପୁଞ୍ଜିବାଦକୁ ଧ୍ୱଂସ କରିବା ପାଇଁ ସେ କୌଣସି ନୀତି ଓ ଜ୍ଞାନ ପନ୍ଥାର ଅସ୍ତ୍ର ନେବାକୁ କୁଣ୍ଠା ବୋଧ କରନ୍ତି ନାହିଁ । କମ୍ୟୁନିଷ୍ଟମାନଙ୍କ ମତରେ ଲୋକମାନଙ୍କର ଅଭାବ ଓ ଅସୁବିଧା ବଢ଼ିଲେ, ଦୁଃଖ ଓ କଷ୍ଟର ମାତ୍ରା ଅସମ୍ଭାଳ ହେଲେ, ବିପ୍ଳବ ହେବାର ସମ୍ଭାବନା । ତେଣୁ ପ୍ରଚଳିତ ସରକାର ଅଧୀନରେ ଜନସାଧାରଣଙ୍କର ଦୁଃଖ ଯେପରି ବଢ଼େ, ସେଥିପାଇଁ ସେମାନେ ଷଡ଼ଯନ୍ତ୍ରମାନ ଚେଷ୍ଟା କରନ୍ତି ପ୍ରସିଦ୍ଧ ଦାର୍ଶନିକ ବାର୍ଟ୍ରାଣ୍ଡ ରସେଲ୍‌ଙ୍କ ମତରେ,

**The fuudamental cause of communist malady is dogmatism and a complete absence of kindly feeling. It is the combination of thes two defects, one intellectual and the other moral, that appears to justify the dictatorship and the use of cruel means for enforcing its success.**

ଅର୍ଥାତ୍ ନିଜର ମତରେ ଅନ୍ଧ ବିଶ୍ୱାସ ଓ ଅପର ପ୍ରତି ଦୟାର ଅଭାବ କମ୍ୟୁନିଜିମ୍‌ର ପ୍ରଧାନ ରୋଗ । ଏହା ଫଳରେ ଏକଚ୍ଛତ୍ର ଶାସନ ବ୍ୟବସ୍ଥା ସୃଷ୍ଟି ହୁଏ ଓ ସେଥିପାଇଁ ମଧ୍ୟ କମ୍ୟୁନିଷ୍ଟମାନେ ନିଷ୍ଠୁର ଉପାୟରେ ନିଜର ମତ ପ୍ରତିଷ୍ଠା କରିବାକୁ ଚେଷ୍ଟା କରନ୍ତି ।

ବଖରାରେ ଗୋଟିଏ ଗୋଟିଏ ଟେଲିସ୍କ୍ରିନ୍ ବସିବ । ଏହି ଟେଲିସ୍କ୍ରିନ୍ ସାହାଯ୍ୟରେ ଲୋକେ କଣ କହୁଛନ୍ତି ଓ କରୁଛନ୍ତି, ତାହା ସରକାର ଜାଣି ପାରିବେ । ଏପରିକି ଶୋଇବା ଅବସ୍ଥାରେ ଯଦି ସ୍ୱପ୍ନରେ କେହି କିଛି ସରକାରଙ୍କ ବିରୁଦ୍ଧରେ କହି ପକାଏ, ତାହା 'ମଧ୍ୟ ଟେଲିସ୍କ୍ରିନ୍‌ରେ ରେକର୍ଡ଼ ହୋଇଯିବ । ତତ୍‌ପରେ ଟେଲିସ୍କ୍ରିନ୍ ସାହାଯ୍ୟରେ ବକ୍ତୃତା ହେଉଥିବାବେଳେ ଯଦି କାହାର ମୁହଁରେ ବିକୃତ ଚିହ୍ନ ଦେଖାଯାଏ, ତାହେଲେ ତାହା ମଧ୍ୟ ଟେଲିସ୍କ୍ରିନ୍‌ରେ ରେକର୍ଡ ହୋଇଯାଉଥିବ ଏବଂ ଏହି ମୁଖ ବିକୃତ (Face crime) ପାଇଁ ମଧ୍ୟ ପ୍ରାଣଦଣ୍ଡ ଦିଆଯିବ । ସେହିପରି ଲୋକମାନଙ୍କର ମନର ଭାବ ଜାଣିବା ପାଇଁ ମନ ପୁଲିସ୍ (Thought police) ରହିବେ । ଏମାନେ କେବଳ ସନ୍ଦେହରେ (Thought-crime) ଲୋକ-ମାନଙ୍କୁ ଅରେଷ୍ଟ କରି କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପରେ ରଖି ଅତ୍ୟାଚାର କରି ପାରିବେ । ଉପନ୍ୟାସର ପ୍ରଧାନ ଚରିତ୍ର ଉଇନ୍‌ଷ୍ଟନ ଗୋଟିଏ ଝିଅକୁ ଭଲ ପାଇବାକୁ ଚେଷ୍ଟା କରିବାରୁ ଦୋଷୀ ସାବ୍ୟସ୍ତ ହୋଇଥିଲେ । ପାର୍ଟି ବ୍ୟତୀତ ଅନ୍ୟକୁ କେହି ଭଲ ପାଇବେ ନାହିଁ । ଜନସଂଖ୍ୟା ବଢ଼ାଇବା ପାଇଁ ଯୌନ ପ୍ରକ୍ରିୟା କରାଯାଇ ପାରିବ—କିନ୍ତୁ ଭଲ ପାଇବା ଯୋଗୁଁ ନୁହେଁ । ପାର୍ଟି ଦୃଷ୍ଟିରୁ ଇତିହାସ ଲେଖାଯିବ । ପାର୍ଟି ଦୃଷ୍ଟିରୁ କାହାକୁ ବନ୍ଦୀ ହେଲେ ଇତିହାସରୁ ତା ନାଁ ଉଠାଇ ଦିଆଯିବ । ତେଣୁ ପ୍ରତ୍ୟେକ ଦିନ ଇତିହାସରେ ପରିବର୍ତ୍ତନ ହେଉଥିବ । ଯେ ଗଲା, ତାର ସ୍ମୃତି ଯେପରି କାହାଠାରେ ନ ରହୁ । ପୁଅ ଓ ଝିଅମାନେ ବାପା ଓ ମା ମାନଙ୍କ ଗତିବିଧି ଓ ବାପା ଓ ମା ମାନଙ୍କର ପାର୍ଟି ପ୍ରତି ଆସ୍ଥା ନ ଥିବାର ଦେଖିଲେ ପୁଲିସକୁ ଖବର ଦେବେ । ପାର୍ଟିର ସ୍ଲୋଗାନ ହେବ:—

'Ignorance is strength' (ଅଜ୍ଞାନତା ହେଉଛି ଶକ୍ତି)
'war is peace. (ଯୁଦ୍ଧ ହେଉଛି ଶାନ୍ତି)
'Freedom is slavery. (ଦାସତ୍ୱ ହେଉଛି ମୁକ୍ତି)

ଏକଛତ୍ର ଶାସନ ବ୍ୟବସ୍ଥାରେ ଏହାଠାରୁ ଅଧିକ ଆଉ କିଛି ଭୁଲାଯାଇ ନ ପାରେ। କିନ୍ତୁ ଏଥିପାଇଁ କମ୍ୟୁନିଷ୍ଟମାନେ ଲଜ୍ଜିତ ନୁହନ୍ତି। ସେମାନେ ଭାବନ୍ତି ଯେ ସେମାନେ ଏକ ବଡ଼ ଉଦ୍ଦେଶ୍ୟ ନେଇ ଶାସନ ଭାର ଗ୍ରହଣ କରିଛନ୍ତି। ଯେଉଁମାନେ ସେମାନଙ୍କୁ ବିରୋଧ କରୁଛନ୍ତି, ସେମାନେ ଅଜ୍ଞ। ସେମାନଙ୍କର ବୁଦ୍ଧିବୃତ୍ତି କ୍ଷୁଣ୍ଣ ନାହିଁ କିମ୍ବା ସେମାନେ ଶତ୍ରୁମାନଙ୍କର ଗୁପ୍ତଚର। ତେଣୁ ସେମାନଙ୍କ ପ୍ରତି ବାହୁବଳ ବ୍ୟବସ୍ଥା କରିବା ଉଚିତ। କମ୍ୟୁନିଜମ ପ୍ରତିଷ୍ଠା ପାଇଁ ଯେ କୌଣସି ଅତ୍ୟାଚାର ଗ୍ରହଣୀୟ। ପ୍ରକୃତରେ କ୍ଷମତା ଏକ ବଡ଼ ମୋହ। ଥରେ କ୍ଷମତା ହାତକୁ ଆସିଲେ, ଆଉ ଛାଡିବାକୁ ଇଚ୍ଛା ହୁଏ ନାହିଁ। ଅତି ମହତ ଉଦ୍ଦେଶ୍ୟ ନେଇ କ୍ଷମତା ଗ୍ରହଣ କରିଥିଲେ ମଧ୍ୟ, ପରେ ମହତ୍ ଉଦ୍ଦେଶ୍ୟ କଥା ପାଶୋରି ଯାଏ। କ୍ଷମତାକୁ ଜାବୁଡ଼ି ଧରିବାକୁ ଇଚ୍ଛା ହୁଏ। କମ୍ୟୁନିଷ୍ଟମାନେ ପ୍ରଥମେ ଜନସାଧାରଣଙ୍କ ତଥା ନିଜ କ୍ଷମତା ହାତକୁ ନିଅନ୍ତି। ପରେ ନିଜକୁ କ୍ଷମତାରେ ରଖିବା ପାଇଁ ଜନସାଧାରଣଙ୍କୁ ମଧ୍ୟ ଘୃଣା କରନ୍ତି। ଯେ ବିରୁଦ୍ଧରେ ପାଟି ଫିଟାଇଲା, ସେ ଶତ୍ରୁ। କ୍ଷମତା ପାଇବା ପରେ ନିଜକୁ ଯେଉଁ ସୁବିଧା ଓ ସୁଯୋଗ ମିଳେ, ତାକୁ ଯେ କୌଣସି ମତରେ ରକ୍ଷା କରିବାକୁ ଲାଗିପଡନ୍ତି। ସଂସ୍କୃତିକୁ ମଧ୍ୟ କମ୍ୟୁନିଷ୍ଟ ପାର୍ଟି ସ୍ୱାର୍ଥରେ ରହିବା ଉଚିତ ବୋଲି ପ୍ରଚାର ହୁଏ। କମ୍ୟୁନିଷ୍ଟ ଏକଛତ୍ର ଶାସନ ଫଳରେ ଭବିଷ୍ୟତରେ ନିଶ୍ଚୟ ମଙ୍ଗଳ ହେବ। ସେଥିପାଇଁ ବର୍ତ୍ତମାନ ଯେତେ ଅଭାବ, ଅନାଟନ ହୁଏ, ଲୋକମାନଙ୍କର ସ୍ୱାଧୀନତା ଅପହରଣ କରିବା ଦରକାର ପଡେ;

କମ୍ବା ଲକ୍ଷେ ବୁର୍ଜୁଆ ଲୋକଙ୍କର ମୁଣ୍ଡ କାଟିବା ଦରକାର ହୁଏ, ଏଥିରେ ଦୁଃଖ କରିବାର କଣ ଅଛି ? କମ୍ୟୁନିଜିମରେ ଅଣ-ବିଶ୍ୱାସୀଙ୍କର ସ୍ଥାନ ନାହିଁ । ଯେଉଁମାନେ ବାହାର ସ୍ୱାର୍ଥରେ ଶତ୍ରୁଙ୍କର ମତାମତ ପ୍ରଚାର କରିବେ, ସେମାନେ ଦେଶଦ୍ରୋହୀ । ସମସ୍ତଙ୍କୁ କମ୍ୟୁନିଜିମକୁ ମାନିନେବାକୁ ହେବ । ମତଭେଦର ଅବକାଶ ନାହିଁ । ଶତ୍ରୁର ଆବଶ୍ୟକତା ନାହିଁ । କମ୍ୟୁନିଜିମ ଗ୍ରହଣ କରି କମ୍ୟୁନିଷ୍ଟ ଶାସନର କୌଣସି ଏକ ବିଷୟର ଅବହେଳା କଥା ଉଲ୍ଲେଖ କଲେ ମଧ୍ୟ, ଦେଶଦ୍ରୋହିତାରେ ଅଭିଯୁକ୍ତ ହେବାକୁ ପଡ଼ିବ । ଅର୍ଥନୈତିକ ସ୍ୱାଧୀନତା ପାଇଁ ଏ ଯେଉଁ ବିରାଟ ଚିନ୍ତାସ୍ୱାଧୀନତାର ଅପହରଣ ଆମ ଆଗରେ ଦେଖା ଯାଉଛି, ତାହା କେତେ ଦୂର ଗ୍ରହଣୀୟ, ତାହା ପ୍ରତ୍ୟେକ ଶିକ୍ଷିତ ଲୋକ ଚିନ୍ତା କରିବାର କଥା ।

ରୁଷିଆରେ ଅକାଳ ୨୦।୨୫ ବର୍ଷ ହେଲା କମ୍ୟୁନିଜିମର ଯେଉଁ ପ୍ରୟୋଗ ହୋଇଛି, ତାର ଅବସ୍ଥା କଣ ? ଅର୍ଥନୈତିକ ସମାନତା ପାଇଁ ଯେଉଁ କମ୍ୟୁନିଷ୍ଟମାନେ ଏତେ ପାଟିତୁଣ୍ଡ କରୁଥିଲେ ରୁଷିଆରେ କଣ ସେ ଅର୍ଥନୈତିକ ସମାନତା ଆସିପାରିଛି ? ତାର ଅମଳଦାରୁ ହୁଏତ ଲୋକଙ୍କର ଅବସ୍ଥାରେ ଅଳ୍ପ ଉନ୍ନତି ହୋଇଛି, କିନ୍ତୁ ଅର୍ଥନୈତିକ ସ୍ୱାଧୀନତା ତ କମ୍ୟୁନିଜିମ୍ ନୁହେଁ । ଜେମ୍ସ ବର୍ନହାମ ମ୍ୟାନେଜେରିଅଲ ରେଭୋଲ୍ୟୁସନ୍ (Managerial Revolution) ନାମକ ଯେଉଁ ପୁସ୍ତକ ଲେଖିଛନ୍ତି, ସେଥିରେ କହିଛନ୍ତି ଯେ ରୁଷିଆରେ ଯେଉଁ ବିପ୍ଳବ ହୋଇଛି ସେଥିରେ ଜନସାଧାରଣଙ୍କ ହାତକୁ କ୍ଷମତା ଆସିନାହିଁ । କୃଷି ଓ ଶିଳ୍ପର ପରିଚାଳକମାନେ ଅଳ୍ପ ସରକାରର ଶକ୍ତିଠାରୁ ବଡ଼ ପ୍ରତିପତ୍ତିଶାଳୀ ସେମାନଙ୍କ ହାତରେ କ୍ଷମତା ଓ ଧନ । ଅନ୍ୟ ଯେ କୌଣସି

ଛେ ଏ ସବୁ ଦେଶରେ ରୁଷ ବିରୁଦ୍ଧରେ ପ୍ରଚାର । କେତେ ମତ
ରେ ଦେଶରେ ରୁଷ ବିରୁଦ୍ଧରେ ଅନେକ ପ୍ରଚାର କରନ୍ତି । କିନ୍ତୁ
ସବୁ ଅଭିଯୋଗ ମିଥ୍ୟା ବୋଲି ଉଡ଼ାଇ ଦେବା ନାହିଁ । ରୁଷିଆରେ ଯଦି କିଛି
ଲୁଚାଇବାର ନଥାନ୍ତା, ତା ହେଲେ ଅବାଧ ଯିବାଆସିବା ପାଇଁ
ନାହିଁ କି କରାଯାଉଛି ? ଅନ୍ୟ ଦେଶମାନଙ୍କ ପରି ରୁଷିଆର
ଦ୍ୱାର ଖୋଲାଯାଉ ନାହିଁ କାହିଁକି ? ରୁଷିଆକୁ ଯିବା ପାଇଁ
ଏତେ କଡ଼ା ଅଟକ କାହିଁକି ? ଯୁକ୍ତରାଷ୍ଟ୍ରରେ ଯେ କୌଣସି ଦେଶକୁ
ଯାଇ, ସେ ଦେଶର ଖବର ଅନ୍ତର ସଂଗ୍ରହ କରିପାରିବେ କୌଣସି
ବାଧା ନାହିଁ । ଅଥଚ ରୁଷିଆକୁ ଯିବାପାଇଁ ଅନୁମତି ପାଇବା
କାଠିକର ପାଠ । ଅନେକ ଦିନ ପରେ ଅନୁମତି ମିଳେ । ଅନୁମତି
ମିଳିଲେ ବି ମନଇଚ୍ଛା ଦେଖି ବୁଲିପାରିବେ ନାହିଁ ।
ସରକାରୀ ଲୋକରେ ସବୁ ପ୍ରଦର୍ଶନ କରାଇବେ । ଗରିବ ବା
ଦୁଃଖୀ ଶ୍ରମିକ ଲୋକ ବା ବସ୍ତି ଦେଖି ସେମାନଙ୍କଠାରୁ କଥା ପଚାରି
ହେବା ତ ଦୂରର କଥା । ଏଥିପାଇଁ ଅନେକ ଯୁକ୍ତରେ କମ୍ୟୁନିଜମ
ପ୍ରତି ବେଶୀ ସନ୍ଦେହ ପ୍ରକାଶ ପାଉଛି । ଅନେକ ଯେଉଁମାନେ
ସାମ୍ୟବାଦ ପ୍ରତି ଘୃଣା କରୁଥିଲେ, ସେମାନେ ରୁଷିଆ ବା କମ୍ୟୁନିଜମ
ବିରୁଦ୍ଧରେ ପ୍ରଚାର କରୁଥିଲେ । ଅଳ୍ପ ଯେଉଁମାନେ ସାମ୍ୟବାଦକୁ
ପସନ୍ଦ କରୁଥିଲେ, ସେମାନେ ମଧ୍ୟ ରୁଷିଆ ଓ କମ୍ୟୁନିଜମ୍ ବିରୁଦ୍ଧରେ
ମତ ପ୍ରକାଶ କରୁଛନ୍ତି । ୬ ଜଣ ଖ୍ୟାତନାମା ଲେଖକ ମିଶି
ଲେଖିଥିବା ପ୍ରବନ୍ଧ ରଚନା ସଂଗ୍ରହ (The god that failed),
ସେଥିରେ କମ୍ୟୁନିଜମ ପ୍ରତି ସ୍ପଷ୍ଟ ଘୃଣା ପ୍ରକାଶ ପାଉଛି । ଯୁଦ୍ଧ ଥର୍
ଲୋକମାନଙ୍କର ସ୍ଥାନ କେଉଁ ଭିତରେ ଅଟକ ରହିବ ବ୍ୟକ୍ତିତ୍ୱର
ସମ୍ମାନ ଉପଲବ୍ଧି କଲେ ଓ ତାଙ୍କର କମ୍ୟୁନିଷ୍ଟ ପାର୍ଟିରୁ ଇସ୍ତଫା
ଦେଲେ । ଟ୍ରାଟ୍ସ୍କିଙ୍କର ଏତ ଲେଖା ନାଟକ ତାକୁ ଜନ୍ମ କରିଥାଉ

ଷ୍ଟିଫେନଙ୍କୁ ଭୁଲିଗଲେ । ଷ୍ଟିଫେନ୍ ଲେଖାଟିକୁ ଦେଖିବାକୁ ଚାହିଁଲେ । କିନ୍ତୁ ଷ୍ଟାଲିନ ମିଳାଇବା ପାଇଁ ଶୃଙ୍ଖଳା ଦୃଷ୍ଟିରୁ ତାଙ୍କୁ ଲେଖା ଉଦ୍ଦେଶ୍ୟ, ଲେଖାଟିକୁ ସମାଲୋଚନା କରିବାକୁ ହେବ । ଷ୍ଟାଲିନ୍ ଏବଂ ଜଣେ ଲେଖକ ହୋଇ ରହିବାକୁ ଚାହିଁଲେ, କିନ୍ତୁ ତାଙ୍କୁ ସେ ଅନୁମତି ମିଳିଲା ନାହିଁ । ଷ୍ଟାଲିନଙ୍କ ପୂଜା ଓ କଳାର ପରା-ଧୀନତା ଦେଖି ଅଣ୍ଡ୍ରେ ଜାଇଡ ବି କମ୍ୟୁନିଜମ ପାଇଁ ଭୃତ ବୀତଶ୍ରଦ୍ଧ ହୋଇଗଲେ । ଲୁଇ ଫିସର ଷ୍ଟାଲିନ୍ ଓ ହିଟଲରଙ୍କ ଚୁକ୍ତି ପରେ କମ୍ୟୁ-ନିଜିମର ଅସଲ ଓ କାର୍ଯ୍ୟ ପଦ୍ଧତିର ସ୍ୱରୂପ ବୁଝିପାରିଲେ । ସ୍ପେଣ୍ଡର କମ୍ୟୁନିଷ୍ଟମାନଙ୍କ ପ୍ରତି ଅତ୍ୟାଚାର ଦେଖି ଅସନ୍ତୁଷ୍ଟ ହୋଇଗଲେ । ଏମାନେ ସମସ୍ତେ ଦିନେ କମ୍ୟୁନିଜିମର ପୂଜା କରୁଥିଲେ । କମ୍ୟୁନିଷ୍ଟମାନେ ମଧ୍ୟ ଏମାନଙ୍କ ସୁନାମ ଗାନ କରୁଥିଲେ । କିନ୍ତୁ ଆଜି ଏମାନେ କାହିଁକି ବିରୋଧ କରୁଛନ୍ତି ? ଅଁମେରିକାର ଟଙ୍କା ଖାଇ ପ୍ରଭୃତି ଦିନଦଶାରେ ପଡ଼ିଛନ୍ତି । ଲେଖା ଓ ଲେଖାରେ ଏମାନଙ୍କ ଖ୍ୟାତି ପୃଥିବୀ ପ୍ରସିଦ୍ଧ । କିନ୍ତୁ କମ୍ୟୁନିଜମରେ ବୁଦ୍ଧିଜୀବୀଙ୍କ ପ୍ରତି ଯେଉଁ ଘୃଣା ଓ ସ୍ୱାଧୀନତା ପାଇଁ ଯେଉଁ ସମ୍ମାନ ଦେଖାଯାଉଛି ଏଥିରେ ସମସ୍ତେ ସ୍ତବ୍ଧ । ବୁଦ୍ଧିଜୀବୀଙ୍କ ପ୍ରତିରୋଧ ଫଳରେ କମ୍ୟୁନିଜିମ ଦୁର୍ବଳ ହୋଇପାରେ । କିନ୍ତୁ ଏଥିରେ କେବଳକର ଆଦର ନାହିଁ କି ସ୍ନେହ ନାହିଁ । ଅପର ପକ୍ଷରେ ବୁଦ୍ଧିଜୀବୀଙ୍କ ଏମାନଙ୍କୁ ସାହାଯ୍ୟ କରିବ । ଯେଉଁ ପ୍ରଥା ଲେଖକମାନଙ୍କର ସ୍ନେହ, ଆଦର ବା ସହଯୋଗ ବିନା ପ୍ରତିଷ୍ଠିତ ହେବ, ତାର ସ୍ଥାୟିତ୍ୱ ବେଶୀ ଦିନ ନୁହେଁ । ଇତିହାସ ଏକଥା ଅତୀତରେ ପ୍ରମାଣ କରିଛି । ଭବିଷ୍ୟତରେ ଏହାକୁ ପୁନର୍ବାର ବୁଝି ହେବ ମାତ୍ର ।

ବିପ୍ଳବ ଆସିଲା [Came the Revolution] ପ୍ରବନ୍ଧରେ ବାଟ୍ରାଣ୍ଡ ରସେଲ ଅଳ୍ପ ବ୍ୟବସ୍ଥାରେ ପ୍ରତିଷ୍ଠିତ ଏକଛତ୍ର ଶାସନର

ଯେଉଁ ବ୍ୟାଖ୍ୟା ଦେଇଛନ୍ତି, ସେଥିରେ ଇତିହାସର ଏହି ଜ୍ଞାନର ପ୍ରମାଣ ପ୍ରତିପାଦନ କରୁଛନ୍ତି । ପ୍ରଥମେ ପିଥାଗୋରସ କ୍ରୋଟନ୍ ନଗରରେ ଏକଛତ୍ର ଶାସନ ପ୍ରତିଷ୍ଠା କରିଥିଲେ । ଲୋକମାନଙ୍କ ମନରେ ଧାରଣା ଥିଲା ଯେ ସେମାନେ ପ୍ରଭେଦନ ସ୍ଥାପିତ ହେବେ ଓ ଶିମ୍ ଶାସନ ନାହିଁ । ଶିମ୍ ପାଇଁ ସମତା ଯୋଗ୍ୟ ହେଲ ବା ସ୍ଥାପିତ ହୁତ ଲଣ୍ଡା ଯୋଗୁ ଦେଲ, କ୍ରୋଟନ୍ ନଗରର ଲୋକମାନେ ପିଥାଗୋରସଙ୍କ ବିରୁଦ୍ଧରେ ଆନ୍ଦୋଳନ କଲେ । ପିଥାଗୋରସଙ୍କ ରାଜ୍ୟଖଣ୍ଡ ଗୁଳିଚିବାକୁ ବେଳ ଲାଗିଲା ନାହିଁ । ମଧ୍ୟଯୁଗରେ ଧର୍ମନାମରେ ଚର୍ଚ୍ଚ ତରଫରୁ ମଧ୍ୟ ଏକପ୍ରକାର ଏକଛତ୍ର ଶାସନ ପ୍ରତିଷ୍ଠିତ ହୋଇଥିଲା । ଯେଉଁମାନେ ଏଥିରେ ବିଶ୍ୱାସ ନ କଲେ, ସେମାନଙ୍କୁ ଧର୍ମ ବିରୋଧୀ ବୋଲି ବିଚାର କରାଯାଇ ଦଣ୍ଡ ବିଧାନ କରାଗଲା । କିନ୍ତୁ ଏପରିକି ପ୍ରତାପଶାଳୀ ଚର୍ଚ୍ଚର କ୍ଷମତା ବି ବେଶୀ ଦିନ ରହିଲା ନାହିଁ । ଇଂଲଣ୍ଡରେ କ୍ରମୱେଲ୍ ମଧ୍ୟ ଚାର୍ଲସଙ୍କ ପରେ ଗଣତନ୍ତ୍ର ଓ ସ୍ୱାଧୀନତା ନାମରେ ଏକଛତ୍ର ଶାସନ ପ୍ରତିଷ୍ଠା କରି ସାମରିକ ଶାସନ ଜାରି କଲେ । ଗଣତନ୍ତ୍ର ଓ ସ୍ୱାଧୀନତାର ନାମ ଗନ୍ଧ ରହିଲା ନାହିଁ, କିନ୍ତୁ ଗଣତନ୍ତ୍ର ନାମରେ ସାମରିକ ଶାସନର ଅତ୍ୟାଚାର ସାର ହେଲା । ଫ୍ରାନ୍ସରେ ମନୁଷ୍ୟର ଅଧିକାର (equality, liberty and fraternity) ନେଇ ବିପ୍ଳବ ହେଲା । କିନ୍ତୁ ଏହି ବିପ୍ଳବ ଫଳରେ ରୋବସ୍ପିୟର ଓ ପରେ ନେପୋଲିଅନ୍ ଯେତେବେଳେ କ୍ଷମତାକୁ ଆସିଲେ ସେତେବେଳେ ସେମାନେ ମନୁଷ୍ୟର ଦାବୀ ଓ ଅଧିକାର କଥା ଟିକିଏ ହେଲେ ଚିନ୍ତା କଲେ ନାହିଁ । ଭୁଲ ନୀତି ଓ ଉଦ୍ଦେଶ୍ୟରେ ଅବିଶ୍ୱାସ ଯୋଗୁଁ ଏସବୁ କ୍ଷେତ୍ରରେ କ୍ଷମତା ଅତ୍ୟାଚାରରେ ପରିଣତ ହେଲା । ଯେଉଁମାନେ କ୍ଷମତାକୁ ଆସିଲେ ସେମାନେ

ନାଇବ ଉଦ୍ଦେଶ୍ୟ ସାଧନ ଲାଗି ସେ କୌଣସି ଶାସ୍ତ୍ରର ପନ୍ଥା ଅବଲମ୍ବନ କରିବାକୁ ପଶ୍ଚାତପଦ ନହେଲେ ନାହିଁ । ଆଜି ରୁଷିଆରେ ମତବାଦର ଏହି ପୁନରୁଣା ତଥା ପୁନରାବୃତ୍ତି ହେଉଛି । ନାହିଁ ସେ ଅର୍ଥରେ ସେଣ୍ଟ୍‌ଜଷ୍ଟ ରୁଷିଆରେ ୧୯୧୭ ମସିହାରେ ଏକ ବିପ୍ଳବ ବିପ୍ଳବର ମୁଖପାତ୍ର ହୋଇଥିଲେ । ସେହି ଯନ୍ତ୍ର ଥରେ କହିଥିଲେ ଯେ 'No body can rule guiltlessly' । ଅତ୍ୟଏବ ରୁଷିଆର କମ୍ୟୁନିଷ୍ଟମାନେ ମଧ୍ୟ ଏହା ପ୍ରମାଣ କରି ଦେଉଛନ୍ତି ।

---

# ସମାଜବାଦ

ସମାଜବାଦ ଏକ ବିଶ୍ୱଧର୍ମ । ଏଥିରେ କାହାରି ପ୍ରତି ପକ୍ଷ ପାତିତା କରାଯାଇ ନାହିଁ । ତେଣୁ ଯେଉଁମାନେ ସମାଜବାଦୀ ନୁହନ୍ତି, ସେମାନେ ମଧ୍ୟ ସମାଜବାଦର ନିକଟସ୍ଥ ନୀତିକୁ ସମର୍ଥନ କରି ପାରନ୍ତି । ଭିନ୍ନ ଭିନ୍ନ ଲୋକେ ସମାଜବାଦକୁ ଭିନ୍ନ ଭିନ୍ନ ଭାବରେ ଅର୍ଥ କରନ୍ତି । ବର୍ଣ୍ଣାଡ ଶ'ଙ୍କ ମତରେ ସମାଜବାଦର ଅର୍ଥ ଆୟର ସମାନତା ଅର୍ଥାତ୍ ସମାଜର ଭିନ୍ନ ଭିନ୍ନ ଲୋକଙ୍କ ମଧ୍ୟରେ ଆୟର କୌଣସି ତାରତମ୍ୟ ରହିବ ନାହିଁ । ଶିକ୍ଷିତ ହେଉ ବା ଅଶିକ୍ଷିତ ହେଉ, ବୁଦ୍ଧି ଥାଉ ବା ନ ଥାଉ, ବୁଢ଼ା ହେଉ ବା ପିଲା ହେଉ, ପୁରୁଷ ହେଉ ବା ସ୍ତ୍ରୀ ହେଉ ପ୍ରତ୍ୟେକ ଲୋକ ସମାଜବାଦରେ ସମାନ ଆୟ ପାଇବେ । ଯେଉଁମାନେ ଏହି ସମାନ ଆୟରେ ବିଶ୍ୱାସ ନ କରନ୍ତି, ସେମାନଙ୍କୁ ଶ' ସମାଜବାଦୀ ଆଖ୍ୟା ଦେଉ ନାହାନ୍ତି । କିନ୍ତୁ ଶ'ଙ୍କ ବ୍ୟାଖ୍ୟାକୁ ଅନେକ ସମାଜବାଦୀ ସ... ଗ୍ରହଣ କରନ୍ତି ନାହିଁ । କୋଲ ସମାଜବାଦର ଯେଉଁ ବିଶ୍ଳେଷଣ କରନ୍ତି, ସେଥିରେ ସେ କହନ୍ତି ଯେ ସମାଜବାଦକୁ ଦୁଇଟି ଦିଗରୁ ଆଲୋଚନା କରାଯାଇ ପାରେ । ପ୍ରଥମେ ସମାଜବାଦରେ ଶ୍ରେଣୀ ଓ ଶ୍ରେଣୀ ମଧ୍ୟରେ କୌଣସି ପାର୍ଥକ୍ୟ ରହିବ ନାହିଁ । ଏଠି ଶ୍ରେଣୀକୁ କେବଳ ଅର୍ଥନୈତିକ ଦୃଷ୍ଟିରୁ ବିଚାର କରାଯାଇ ନାହିଁ । ଜାତି ଓ ଧର୍ମ ନାମରେ ସମାଜରେ ଯେଉଁ ଉଚ୍ଚ ଓ ନୀଚ ଶ୍ରେଣୀ ଅଛି, ତାର ମଧ୍ୟ ବିଲୋପ ହେବ । ଅର୍ଥାତ୍ ସମାଜବାଦ ଦ୍ୱାରା ଏକ ଶ୍ରେଣୀହୀନ ଓ ବର୍ଣ୍ଣହୀନ ସମାଜ ପ୍ରତିଷ୍ଠିତ ହେବ । ସମାଜର ପ୍ରତ୍ୟେକ ଲୋକ ସ୍ନେହ ଓ ବନ୍ଧୁତା ଦ୍ୱାରା ପରସ୍ପର ସହିତ ରହିବେ।

ଦ୍ୱୀପପୁରେ ଧନ ସଞ୍ଚିତ ହୋଇ ଲୋକମାନଙ୍କ ମଧ୍ୟରେ ବିଶେଷ
କଷ୍ଟ ଫରକ ରହିବ ନାହିଁ । ଧନୀ ଓ ନିର୍ଦ୍ଧନ ଭିତରେ ଅସ
ମାନତାରେ ଆଜି ଏତେ ବ୍ୟବଧାନ ହେଉ. ଧନୀ ସବୁଠି କଥାରାଙ୍କୁ
ଲୋକଙ୍କୁ ନିର୍ଦ୍ଧନ କରୁ କରୁଛନ୍ତି ଓ ନିର୍ଦ୍ଧନ ସବୁଠି ସଂଘର୍ଷ ରଖିବାକୁ
ଧନୀକୁ ଲଜ କରୁଛନ୍ତି । ଜାତୀୟକ ଜଗତରେ ଏକ ବିରାଟ ଦ୍ୱାରୀକି
ଦ୍ୱନ୍ଦ୍ୱ ଉପୁଜାଇ ଦେଇ ଅଛନ୍ତି । ଏହି ଦ୍ୱାରୀର ଚେଷ୍ଟା କରିବାକୁ
ହେଲେ ସମ୍ପତ୍ତି ବେଶୀ ତାରତମ୍ୟ ରହିବ ନାହିଁ । କୋଲ୍,
ସମ୍ପ୍ରଦାୟର ଝଙ୍କ ସମାନ କରିବାକୁ କେହି ନାହାନ୍ତି । ତାଙ୍କ
ମଧ୍ୟରେ ଅଧିକ ବ୍ୟବଧାନ ବେଶୀ ହେବା ଉଚିତ ନୁହେଁ । ତା
ହେଲେ ସମସ୍ତେ ସମାନ ଭାବରେ ମିଳାମିଶା କରି ପାରିବେ । ଧନୀ
ଓ ଦରିଦ୍ର ନାମରେ ଆଜ ସମାଜରେ ଯେଉଁ ଦୁଇଟି ଶ୍ରେଣୀ ସୃଷ୍ଟି-
ହୋଇ ଅଛନ୍ତି, ତା ଲୋପ ପାଇଯିବ । ଦ୍ୱୀପପୁରେ ଆଜ ଯେପରି
ଉତ୍ପାଦନ ପ୍ରଣାଳୀ ଏକଚେଟିଆ ସୃଷ୍ଟି ହେଉ ଲୋକଙ୍କର ସମସ୍ତ ଦୋଷ
ବହନ୍ତି ? ସେମାନଙ୍କ ମନ ଅନୁଯାୟୀ ସେହିପରି ପରିଚାଳନା କରା-
ଯାଉଛି, ସମାଜବାଦରେ ସେଥିପାଇଁ ସୁବିଧା ରହିବ ନାହିଁ ।
ପୁଞ୍ଜିବାଦ ଅର୍ଥନୀତିରେ ଉତ୍ପାଦନ ପ୍ରଣାଳୀ ବ୍ୟକ୍ତିଗତ ସମ୍ପତ୍ତି
ହୋଇ ରହେ । ସେମାନେ ଏହି ଉତ୍ପାଦନ ପ୍ରଣାଳୀକୁ ନିଜ ଲାଭ
ଉଦ୍ଦେଶ୍ୟରେ ଲଗାନ୍ତି । ଜନସାଧାରଣଙ୍କର ଉପକାର ପାଇଁ
ସେମାନେ ଦୃଷ୍ଟି ଦଅନ୍ତି ନାହିଁ । ଜନସାଧାରଣଙ୍କର ଯାହା ବେଶୀ
ଦରକାର, ତାହା ଉତ୍ପାଦନ ନ କରି ଯାହା ଉତ୍ପାଦନ କଲେ
ବେଶୀ ଲାଭ ହେବ, ତାହାହିଁ ଉତ୍ପାଦନ କରନ୍ତି । ତେଣୁ ଏହି
ଉତ୍ପାଦନ ପ୍ରଣାଳୀକୁ ବ୍ୟକ୍ତିଗତ ସମ୍ପତ୍ତି ପରିବର୍ତ୍ତେ ଜନ-
ସାଧାରଣଙ୍କର ଜିମା କରିବା ସମାଜବାଦର ଉଦ୍ଦେଶ୍ୟ । ତା
ହେଲେ ଜନସାଧାରଣଙ୍କର ଦରକାର ଅନୁଯାୟୀ ଉତ୍ପାଦନ ସମ୍ଭବ

ହୋଇ ପାରିବ । ଶେଷରେ ଅସମ ସମାଜରେ ଅଳ୍ପ ଅନେକ ଲୋକ ଅଛନ୍ତି ଯେଉଁମାନେ କି କିଛି କାମ ନ କରି ବାପ ଗୋସାଇଁ ବାପାଙ୍କର ସମ୍ପତ୍ତି ପୁରୁଷାନୁକ୍ରମେ ଉପଭୋଗ କରୁଛନ୍ତି । ଅନ୍ୟ-ମାନେ ହୁଏତ ଦିନସାରା ଖଟି ଖଟି ପେଟ ପୂରେଇ ଖାଇବାକୁ ପାଉ ନାହାନ୍ତି । ଫ୍ରାନ୍ସର ସମାଜବାଦୀ ସାଇଁସିମୋ ଏହି ଆଳସ୍ୟପରଶ୍ରମପୂର୍ଣ ଉପଭୋଗୀ ଦଳଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଥିଲେ । ପ୍ରତ୍ୟେକ ଲୋକ ସମାଜପାଇଁ ତାର ଶକ୍ତି ଅନୁଯାୟୀ କାମ କରିବା ଉଚିତ । ତା ହେଲେ ଯାଇଁ ସମାଜରେ ଫଳତ ଉନ୍ନତ ଓ ପରସ୍ପର ପ୍ରତି ଶ୍ରଦ୍ଧା ଓ ସହୃଦୟତା ବଢ଼ିବ । ତେଣୁ ସମାଜବାଦରେ ପ୍ରତ୍ୟେକ ଲୋକ ନିଜର ଶକ୍ତି ଅନୁଯାୟୀ କାମ କରିବାକୁ ବାଧ୍ୟ । ଯେ କାମ କରିବ ନାହିଁ, ତାକୁ ଖାଇବାକୁ ମିଳିବ ନାହିଁ ।

## ପୁଞ୍ଜିବାଦର ଦୋଷ

ଅମେ ଏ ପର୍ଯ୍ୟନ୍ତ ମୋଟ ଦୁଇଟି ବ୍ୟାଖ୍ୟା ଆଲୋଚନା କରିଛେ । ସମାଜବାଦର ଅନେକ ବ୍ୟାଖ୍ୟା ଅଛି । କିନ୍ତୁ ସେ ସବୁ ଉଦ୍ଧାର ନ କରି ଏତିକି କହିଲେ ଯଥେଷ୍ଟ ହେବ ଯେ, ସମାଜବାଦ ଏକ ସାମାଜିକ ବ୍ୟବସ୍ଥା । ପ୍ରଚଳିତ ପୁଞ୍ଜିବାଦର ଏହା ବିରୋଧ କରେ ଏବଂ ଯେଉଁମାନେ ସମାଜବାଦୀ, ସେମାନେ ପୁଞ୍ଜିବାଦ ପଦ୍ଧତିରେ କପରି ସମାଜବାଦ ପ୍ରତିଷ୍ଠିତ ହେବ, ସେଥିପାଇଁ ଚେଷ୍ଟା କରନ୍ତି । ପୁଞ୍ଜିବାଦର ଦୋଷ ଦୁର୍ବଳତା ଅଳ୍ପ ଅଳ୍ପ ଅନେକର କାହାଣୀ ହୋଇ ଗଲାଣି । ଊନବିଂଶ ଶତାବ୍ଦୀରେ ପୁଞ୍ଜି-ବାଦ ଏକ ପ୍ରଗତିଶୀଳ ଆନ୍ଦୋଳନ ଥିଲା । ପୁଞ୍ଜିବାଦ ଫଳରେ ଉତ୍ପାଦନ ପ୍ରଣାଳୀରେ ବିପ୍ଳବ ସୃଷ୍ଟି ହେଲା । ବଡ଼ ବଡ଼ ନୂଆ ଧରଣର କଳକାରଖାନା ବସିଲା । ଯାହା ସହସ୍ର ବର୍ଷ ବର୍ଷ ଧରି କାରିଗର କରୁଥିଲେ, ତାହା ଦିନକରେ କଳରେ ତିଆରି

ଦେଖାଇଗଲା । ଲୋକଙ୍କ ପାଇଁ ଭଲ ଯୋଗାଣ ହେଲା । ଉତ୍ପାଦନ ମଧ୍ୟ ଅଧିକ ହେଲା । ଦେଶ ଓ ଜାତିର ସମ୍ପଦ ବଢ଼ିଲା । ପୁଞ୍ଜି-ବାଦର ଶକ୍ତି ଦେଖି ଲୋକେ ଅଭିଭୂତ ହୋଇଗଲେ । କିନ୍ତୁ ଏହି ସମ୍ପଦ ଭିତରେ ମଧ୍ୟ ଲୋକଙ୍କ ଅଭାବ ତୁଟିଲା ନାହିଁ । ଗୋଟିଏ ପକ୍ଷେ ପ୍ରାଚୁର୍ଯ୍ୟ ଓ ଅନ୍ୟପକ୍ଷେ ଅଭାବ ଓ ଅନଟନ । ଏହା ଫଳରେ ଅନେକଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ପୁଞ୍ଜିବାଦ ସମାଧାନର ବାଟ ଦେଖାଇଲା ନାହିଁ । ବେନ୍ଥାମ୍, ସ୍ମିଥ ଓ ହବସନ୍ ପ୍ରଭୃତି ଯେଉଁମାନେ ବ୍ୟକ୍ତିବାଦର ପ୍ରଚାର କରୁଥିଲେ, ସେମାନେ ବିଶ୍ୱାସ କରୁଥିଲେ ଯେ, ବ୍ୟକ୍ତି ଓ ସମାଜ ଭିତରେ କିଛି ଦ୍ୱନ୍ଦ୍ୱ ନାହିଁ । ପ୍ରତ୍ୟେକ ଲୋକ ନିଜର ସ୍ୱାର୍ଥ ପାଇଁ ଯାହା କରେ, ସେଥିରେ ସମାଜର ମଙ୍ଗଳ ହୁଏ । କାରଣ ବ୍ୟକ୍ତି ସ୍ୱାର୍ଥ ଓ ସମାଜ ସ୍ୱାର୍ଥ ଭିତରେ କୌଣସି ବିରୋଧ ନାହିଁ । ତେଣୁ ସେମାନେ ସରକାରୀ ନିୟନ୍ତ୍ରଣକୁ ନାପସନ୍ଦ କରୁଥିଲେ । ଆଡ଼ାମ୍ ସ୍ମିଥ୍‌ଙ୍କ ମତରେ ମନୁଷ୍ୟ ଜ୍ଞାନୀ ଓ ପ୍ରକୃତି ଦାନଶୀଳ (**Man is wise and nature is bountiful**) । ତେଣୁ ସରକାରୀ ହସ୍ତକ୍ଷେପ ଅନାବଶ୍ୟକ । କିନ୍ତୁ ପୁଞ୍ଜିବାଦ ଅର୍ଥନୀତି ଯେତେବେଳେ କାର୍ଯ୍ୟକାରୀ ହେଲା, ସେତେ-ବେଳେ ଦେଖାଗଲା ଯେ, ଯେଉଁମାନେ ଉତ୍ପାଦନ ପ୍ରଣାଳୀର ମାଲିକ ସେମାନେ ନିଜର ସ୍ୱାର୍ଥ ଓ ଲାଭପାଇଁ ଉତ୍ପାଦନ କରୁଛନ୍ତି ଓ ସେଥିରେ ସମାଜର ସମ୍ପୂର୍ଣ୍ଣଭାବରେ କିଛି ମଙ୍ଗଳ ହେଉ ନାହିଁ । ବରଂ ସମାଜରେ ଅସମାନତା ବଢ଼ୁଛି । ଯେଉଁମାନେ ଦରିଦ୍ର ହେଉଛନ୍ତି, ସେମାନେ ସମାଜର ସମସ୍ତ ସୁବିଧା ଓ ସୁଯୋଗରୁ ବଞ୍ଚିତ ହୋଇ ରହୁଛନ୍ତି । ତେଣୁ ସମାଜବାଦୀମାନେ ଏହି ପୁଞ୍ଜିବାଦକୁ ସମାଲୋଚନା କଲେ, ବ୍ୟକ୍ତିବାଦର ନିନ୍ଦା କଲେ ଓ ସମାଜର ସମୂହ କଲ୍ୟାଣ ଦୃଷ୍ଟିରୁ ଆର୍ଥିକ ସମାନତା ପ୍ରଚାର କଲେ । ଆର୍ଥିକ

ସମାଜନା ନ ହେଲେ ବା ମୋଟରେ ସମସ୍ତେ ସମାନ ପ୍ରକାର ସୁବିଧା ଓ ସୁଯୋଗ ପାଇ ପାରିବେ, ସେଥିପାଇଁ ଉଦ୍ୟମ କଲେ ।

## ପ୍ରତିଯୋଗିତା ଓ ଅର୍ଥସଙ୍କଟ

ଏ ହେଲା ପୁଞ୍ଜିବାଦର ପ୍ରଥମ ଦୋଷ । ପୁଞ୍ଜିବାଦ ବିରୁଦ୍ଧରେ ଦ୍ୱିତୀୟ ଅଭିଯୋଗ ହେଲା ଯେ, ଏଥିରେ କିଛି ଯୋଜନା ନାହିଁ । ସମାଜର ଯାହା ଯେତେ ଜିନିଷ ଆବଶ୍ୟକ, ଉତ୍ପାଦନ ପ୍ରଣାଳୀ ତାହା ଯୋଗାଇ ପାରୁନାହିଁ । ଦିନେ ଏହା ଏକ ସମୃଦ୍ଧିଶାଳୀ ଅର୍ଥନୈତିକ ବ୍ୟବସ୍ଥା ରୂପେ ଗଣା ଯାଉଥିଲା । କିନ୍ତୁ ବର୍ତ୍ତମାନ ଏହା ଅକ୍ଷମ ହୋଇ ପଡ଼ିଲାଣି । ଯେଉଁମାନେ ପୁଞ୍ଜିବାଦକୁ ଅଧିକ ପସନ୍ଦ କରନ୍ତି, ସେମାନଙ୍କ ଯୁକ୍ତି ବା ତର୍କବାଦରେ କିଛି ଠିକ୍ ନାହିଁ । କେତେବେଳେ ଯେବେ ଅର୍ଥ ସଙ୍କଟ ହେବ, ତା ହେଲେ କୋଟି କୋଟି ଲୋକ ବେକାର ହେବେ ଓ ସେମାନଙ୍କ ଅସୁବିଧା ଶୁନ୍ ହୋଇଯିବ । ୧୯୨୯ ର ଅର୍ଥ ସଙ୍କଟ ତାହା ଅନେକ ପାଠକଙ୍କ ଜାଣି ନାହିଁ । ଏତେ ଅଧିକ ଜିନିଷ ଉତ୍ପାଦନ ହେଲା ଯେ, ତାହା ସବୁ ବିକି ଯିବା ପାଇଁ ବଜାର ମିଳିଲା ନାହିଁ । ସେଥିରୁ ଜିନିଷପତ୍ରର ଦର କମିଲା । ବ୍ୟବସାୟୀମାନେ କ୍ଷତିଗ୍ରସ୍ତ ହେଲେ ଦରଅଭାବରୁ ଜିନିଷ ଫିଙ୍ଗି ଜିନିଷ ପତ୍ରର ଦର କୃତ୍ରିମ ଉପାୟରେ ବଢ଼ାଇବାର ଚେଷ୍ଟା କଲେ । ଅଥଚ ଏଣେ କୋଟି କୋଟି ଲୋକ ବେରୋଜଗାର ଅଭାବରୁ ବ୍ୟବହାର୍ଯ୍ୟ ଜିନିଷ କିଣି ନ ପାରି ଅନାହାରରେ ମରିଲେ । ତଥାପି ବ୍ୟବସାୟୀ—ପ୍ରତିଯୋଗିତା କମିଲା ନାହିଁ । ଏହି ପ୍ରତିଯୋଗିତାରେ କୋଟି କୋଟି ଟଙ୍କା ଅପବ୍ୟୟ ହେଲା । ସମାଜବାଦୀମାନେ ଏହାର ବିରୋଧ କଲେ । ପ୍ରତିଯୋଗିତା ବଦଳରେ

ଅର୍ଥନୈତିକ ଯୋଜନା କରି ଅନ୍ନ ଓ କର୍ମର ବ୍ୟବସ୍ଥା କରିବା ଉଚିତ ବୋଲି ମତ ଦେଲେ ।

## ଶ୍ରମିକର ଅବସ୍ଥା

ପୁଞ୍ଜିବାଦ ବିରୁଦ୍ଧରେ ଆଉ ଏକ ଅଭିଯୋଗ ହେଉଛି ଯେ, ପୁଞ୍ଜିବାଦ ମନୁଷ୍ୟର ମର୍ଯ୍ୟାଦା ବୁଝେନାହିଁ, ଜିନିଷପତ୍ରର ସୌନ୍ଦର୍ଯ୍ୟ ପ୍ରତି ଦୃଷ୍ଟି ଦିଏନାହିଁ । ଅଧୁନାର ଯୁଗରେ ଅପୂର୍ବ ଜିନିଷ ଉତ୍ପାଦନ କରାଯାଏ । ଯେଉଁ ଶ୍ରମିକମାନେ କଳକାରଖାନାରେ କାମ କରନ୍ତି, ସେମାନଙ୍କର ମୂଲ୍ୟ ଜିନିଷପତ୍ରର ମୂଲ୍ୟପରି ଠିକ୍ କରାଯାଏ । ଯେତେବେଳେ ଗୋଲାମ ପ୍ରଥା ପ୍ରଚଳିତ ଥିଲା, ସେତେବେଳେ ମନୁଷ୍ୟମାନେ କିଣାବିକା ହେଉଥିଲେ । ଜମି, ଘର, ଗାଈଗୋରୁ ପରି ମନୁଷ୍ୟମାନେ ମଧ୍ୟ ସମ୍ପତ୍ତିରୂପେ ପରିଗଣିତ ହେଉଥିଲେ । ପୁଞ୍ଜିବାଦ ଅମଳରେ ମନୁଷ୍ୟ ସ୍ୱାଧୀନ ହେଲା ସତ; କିନ୍ତୁ ଶ୍ରମିକମାନଙ୍କର ଶ୍ରମ ଜିନିଷପତ୍ର ପରି କିଣାବିକା ହେଲା । ଶ୍ରମ ବ୍ୟତୀତ ଶ୍ରମିକର ଆଉ କିଛି ସମ୍ପତ୍ତି ନାହିଁ । ତେଣୁ ଶ୍ରମିକ ଯାହାକୁ ନିଜର ଶ୍ରମ ବିକିଲା, ତାର ଅଧୀନ ହୋଇ ରହିଲା । ପୁଣି କଳକାରଖାନାରେ କାମ କରି ଜିନିଷ ଉତ୍ପାଦନ କରିବା ଫଳରେ ଶ୍ରମିକ ମନରେ ଶ୍ରମ ପ୍ରତି କୌଣସି ଆନନ୍ଦ ଆସିଲା ନାହିଁ । ଶ୍ରମିକ କୌଣସି ଗୋଟିଏ ଜିନିଷ ପୂର୍ଣ୍ଣ ଭାବରେ ତିଆରି କରି ପାରୁନାହିଁ । ଗୋଟିଏ ପିନ୍‌ଟିଏ ତିଆରି କରିବା ପାଇଁ ମଧ୍ୟ ଅନେକ ଲୋକଙ୍କର ସହଯୋଗ ଦରକାର ପଡ଼ୁଛି । ନିଜେ କୌଣସି ଗୋଟିଏ ଜିନିଷ ତିଆରି କରିପାରିଲେ, ମନରେ ଅପୂର୍ବ ଆନନ୍ଦ ଆସେ—ନିଜ ତିଆରି ଜିନିଷ ବୋଲି ଭଲ ଲାଗେ । ପରିଶ୍ରମ ସଫଳ ହୁଏ । କିନ୍ତୁ କଳକାରଖାନାରେ ଯେଉଁମାନେ କାମ କରନ୍ତି,

ସେମାନେ ନିଜ ଉଦ୍ୟମ କାର୍ଯ୍ୟ ବୋଲି କରୁ ନଥିବାରୁ ସୁବିଧା ପାଉନ୍ତି ନାହିଁ । ଯେଉଁଠି ଗୋଟିଏ ଯନ୍ତ୍ରକଣାକୁ ୨୦ । ୨୫ ଜଣ ଲୋକ ମିଳିମିଶି କରୁଛନ୍ତି, ସେଠି ଶ୍ରମିକ ନିଜର କାର୍ଯ୍ୟ ବୋଲି କଣ କହିବ ! ପୁଣି କଳକାରଖାନାରେ ସବୁ ଏକାରକମ କାର୍ଯ୍ୟ ଚଳଣ ହୁଏ । ଏଥିରେ ବ୍ୟକ୍ତିଗତ ରୁଚି ନାହିଁ । ଶ୍ରମିକମାନେ ମଧ୍ୟ ଅସ୍ୱାସ୍ଥ୍ୟକର ଅବସ୍ଥାରେ କାମ କରନ୍ତି—କମ ମଜୁରି ପାଆନ୍ତି, ଲାଭରୁ ଭାଗ ପାଆନ୍ତି ନାହିଁ । ତେଣୁ ଶ୍ରମିକ ଓ ମାଲିକ ଭିତରେ ସଂଘର୍ଷ ସୃଷ୍ଟି ହୁଏ । କଳକାରଖାନାରେ ଶାନ୍ତି ପରିବର୍ତ୍ତେ ଅଶାନ୍ତିର ରାଜ୍ୟ ଦେଖାଯାଏ । ତେଣୁ ସମାଜବାଦୀମାନେ ଉତ୍ପାଦନ ପ୍ରଣାଳୀରେ ପରିବର୍ତ୍ତନ କରି କର୍ତ୍ତୃତ୍ୱ ବଣ୍ଟିବାକୁ ଚାହାନ୍ତି । ଯାହାର ଶ୍ରମରେ କଳ କାରଖାନା ଯନ୍ତ୍ର ଏକ ଚାଲୁଛି ଓ ଯାହାର ଶ୍ରମ ଫଳରେ ଉତ୍ପାଦନ ସମ୍ଭବ ହୋଇଥାଉଛି, ସେ ଯେବେ ଦେଖିବେ କିଛି ଭାଗ ନ ପାଏ ଓ ଶ୍ରମ କରି ଉତ୍ପାଦନ କରୁଛନ୍ତି ବୋଲି ଆନନ୍ଦ ଅନୁଭବ କରିବେ, ତାହେଲେ ଉତ୍ପାଦନର ମୂଲ୍ୟ କଣ ? ତେଣୁ ସମାଜବାଦ ପୁଞ୍ଜିବାଦୀ ଅର୍ଥ-ନୀତିକୁ ବାତିଲ କରି ଏକ ନୂଆ ଧରଣର ଅର୍ଥ ଅବସ୍ଥା ପ୍ରଚଳନ କରିବାପାଇଁ ପ୍ରୟାସ କରିଛି ।

## ସ୍ୱାଧୀନ ଅଭିରୁଚି

ପୁଞ୍ଜିବାଦ ସପକ୍ଷରେ ଆଉ ଏକ ଯୁକ୍ତି କରାଯାଏ ଯେ ଏଥିରେ ସ୍ୱାଧୀନ ଅଭିରୁଚି (Freedom of choice) ପାଇଁ ସ୍ଥାନ ଅଛି, ଯେ ଯାହା ଇଚ୍ଛା କଲେ, ତା କରିପାରିବ । ଯେତେବେଳେ ପୁଞ୍ଜିବାଦର ଆରମ୍ଭ ହେଲା, ସେତେବେଳେ ସ୍ୱାଧୀନ ଅଭିରୁଚିର ସ୍ଥାନ ଥିଲା । ଆଜି କିନ୍ତୁ ତାହା ନାହିଁ । ସେତେବେଳେ ବ୍ୟକ୍ତିଗତ ବାଣିଜ୍ୟ ପାଇଁ ସୁଯୋଗ ଓ ସୁବିଧା ଥିଲା । ଆଜି କିନ୍ତୁ ଏକଚାଟିଆ

ବାଣିଜ୍ୟ ପୁଞ୍ଜିବାଦ ଅର୍ଥନୀତିକୁ ପୂର୍ଣ୍ଣରୂପେ ଗ୍ରାସ କରିଦେଉଛନ୍ତି । କେତୋଟି ଉଦାହରଣ ଦେଖାଯାଉ । ୧୮୯୦ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡରେ ସମ୍ମିଳିତ ମୂଳଧନରେ ୧୦୪ଟି ବ୍ୟାଙ୍କ ଖୋଲିଥିଲା । ୧୯୨୪ ମସିହା ବେଳକୁ ତାହାର ସଂଖ୍ୟା କମି ୧୮ ହେଲା ଏବଂ ଏଥିରୁ ଶତକଡ଼ା ୮୦ ଭାଗ ମୂଳଧନ ପାଞ୍ଚୋଟି ବଡ଼ ବ୍ୟାଙ୍କ କବ୍ଜାରେ ରହିଲା । ସେହିପରି ବ୍ୟବସାୟ ବାଣିଜ୍ୟରେ ଏକଗୁଟିଆ ବାଣିଜ୍ୟ (Monopoly) [illegible] ଉଠିଲା । ତେଣୁ ପୁଞ୍ଜିବାଦୀ ଅର୍ଥନୀତିରେ ବ୍ୟକ୍ତିଗତ ବାଣିଜ୍ୟ ବା ବ୍ୟବସାୟ ପାଇଁ ସ୍ୱାଧୀନତା ବା ସ୍ୱତନ୍ତ୍ରତା କେଉଁଠି ନାହିଁ । ସରକାରୀ ନିୟନ୍ତ୍ରଣ ବିରୁଦ୍ଧରେ ଅଯଥା ଚିତ୍କାର ଅର୍ଥ କିଛି ନାହିଁ । ଗୋଟିଏ ପକ୍ଷେ ସରକାରୀ ନିୟନ୍ତ୍ରଣ ଓ ଅନ୍ୟ ପକ୍ଷେ ଏକଗୁଟିଆ ବ୍ୟବସାୟୀମାନଙ୍କର କଣ୍ଟ୍ରୋଲ—ଦୁଇଟିଠାରୁ ପ୍ରଥମଟି ଶ୍ରେୟସ୍କର । ତେଣୁ ସମାଜବାଦୀମାନେ ସରକାରୀ ନିୟନ୍ତ୍ରଣ ସପକ୍ଷେ ବିଶ୍ୱାସ କରନ୍ତି । ସରକାରୀ ବଳ ସାହାଯ୍ୟରେ ସମାଜର ଅର୍ଥନୈତିକ ପୁନର୍ଗଠନ ଆଣିବାକୁ ଚାହାନ୍ତି । ସାମ୍ୟବାଦୀମାନଙ୍କ ପରି ସେମାନେ ହିଂସାକୁ ପୂଜା କରନ୍ତି ନାହିଁ । ଲୋକମାନଙ୍କ ମଙ୍ଗଳପାଇଁ ଆଇନକୁ ଏକ ଅସ୍ତ୍ରରୂପେ ଗ୍ରହଣ କରନ୍ତି । କାରଣ ସମାଜର ପୁନର୍ଗଠନ ବ୍ୟକ୍ତିଗତ ଉଦ୍ୟମରେ ସମ୍ଭବ ହୋଇ ପାରିବ ନାହିଁ । ସମାଜବାଦ ଅର୍ଥ ବ୍ୟକ୍ତିଗତ ଦୟା ବା ଦାନଶୀଳତା ନୁହେଁ । ଗରିବଙ୍କୁ ଭିକ ଦେଇ ଦାରିଦ୍ର୍ୟ ଲୋପ କରାଯାଇ ପାରିବ ନାହିଁ । ବରଂ ଏହା ଫଳରେ ଦାରିଦ୍ର୍ୟ ବଢ଼ିବ । ପୁରାତନ ରୋମରେ ଦେବାଳୟ ଲୋକମାନଙ୍କୁ ଭିକ ଦେଇ ସେମାନଙ୍କର ଦୁଃଖ ଦୂର କରିବାକୁ ଚେଷ୍ଟା କରୁଥିଲେ । ତା ଫଳରେ ଲୋକେ କାମ କରିବାକୁ ଶିଖିଲେ ନାହିଁ । ପୁରାତନ ରୋମର ପତନ ସମୟଠାରୁ ଆରମ୍ଭ ହେଲା । ସମାଜବାଦରେ ଭିକ ଦେବା ବାରଣ ହେବ । [illegible]

ଯେପରି ଜଙ୍ଗଲ ହୋଇ କୃଷିନେଇ ଲୋକେ ଦଣ୍ଡ ପାଉଛନ୍ତି, ସେହିପରି ଯେଉଁମାନେ ଇଚ୍ଛାମତି ଚଳାଇବାକୁ ଚାହିଁବେ, ସେମାନଙ୍କୁ ମଧ୍ୟ ଦଣ୍ଡ ଦିଆଯିବ। ସରକାର ଦାରିଦ୍ର୍ୟ ଦୂର କରିବେ।

## ସାମ୍ୟବାଦର ଲକ୍ଷ୍ୟ ଓ ପ୍ରଣାଳୀ

ମୋଟାମୋଟି ଭାବରେ ସମାଜବାଦର ଲକ୍ଷ୍ୟ ବିଗ୍ରହ କଲେ ଦେଖାଯିବ ଯେ, ଏଥିରେ ଗୋଟିଏ ପ୍ରଧାନ ଉଦ୍ଦେଶ୍ୟ ଅଛି। ପ୍ରଥମରେ ପ୍ରତ୍ୟେକ ଲୋକ ସମାଜରେ ସମାନ ସୁବିଧା ଓ ସୁଯୋଗ ପାଇବେ। ଅର୍ଥିକ ଅସମାନତା ସେଥିପାଇଁ ଦୂର କରିବାକୁ ପଡ଼ିବ। ଦ୍ୱିତୀୟରେ ଉତ୍ପାଦନ ପ୍ରଣାଳୀରେ ଯେଉଁ ଶୋଷଣ ଓ ବ୍ୟକ୍ତିଗତ କର୍ତ୍ତୃତ୍ୱ ଅଛି, ତାକୁ ଲୋପ କରିବାକୁ ହେବ। ତୃତୀୟରେ ବ୍ୟକ୍ତିଗତ ବାଣିଜ୍ୟ ଓ ବ୍ୟବସାୟରେ ଯେଉଁ ପ୍ରତିଯୋଗିତା ଚାଲିଛି ଓ ଯାହା ଫଳରେ କୋଟି କୋଟି ଟଙ୍କା ଅପଚୟ ହେଉଛି, ତାକୁ ଲୋପ କରିବାକୁ ପଡ଼ିବ। ଚତୁର୍ଥରେ ଏକ ନ୍ୟାୟପୂର୍ଣ୍ଣ ବଣ୍ଟନ ପ୍ରଣାଳୀର ବ୍ୟବସ୍ଥା କରିବାକୁ ହେବ। ଏସବୁ ଉଦ୍ଦେଶ୍ୟର ଆଲୋଚନା ଆଗରୁ ହୋଇସାରିଛି। ତେଣୁ ଅଧିକ ବିଶ୍ଳେଷଣ ନ କରି କି ଉପାୟରେ ଏହା ସମ୍ଭବ ହୋଇପାରିବ, ତାହା ବର୍ତ୍ତମାନ ଦେଖାଯାଉ।

ଏଥିପାଇଁ ଅନେକ ପନ୍ଥା ଦରକାର। ପ୍ରଥମରେ ଦେଶର ପ୍ରଧାନ ପ୍ରଧାନ ଶିଳ୍ପ ଓ ବାଣିଜ୍ୟ ସରକାରଙ୍କର କର୍ତ୍ତୃତ୍ୱରେ ରହିବ। ସରକାର ସ୍ୱତନ୍ତ୍ର ବୋର୍ଡ ଦ୍ୱାରା ଏହାର ପରିଚାଳନା କରିବେ—ଆମ ଦେଶରେ ଯେପରି ରେଲ୍‌ୱେ ବୋର୍ଡ ରେଲ୍‌ୱେର ପରିଚାଳନା କରୁଛନ୍ତି। ତାହାହେଲେ ଶିଳ୍ପ ଓ ବ୍ୟବସାୟରେ ଅସଙ୍ଗ-ଠନର ଲେଜେଜ୍‌ଫେୟାର୍ ନୀତି ନେବାରେ ରଦ୍ଦ କରାଯିବ

ନାହିଁ । କାରଣ ବ୍ୟବସାୟ ଓ ବାଣିଜ୍ୟର ଉନ୍ନତପାଇଁ ଅନେକ ସମୟରେ ଦ୍ରୁତଗତି ଶକ୍ତିର ଏକାନ୍ତ ଆବଶ୍ୟକ । ମୁଖ୍ୟ ମୁଖ୍ୟ ଶିଳ୍ପ ଓ ବାଣିଜ୍ୟଗୁଡ଼ିକ ସରକାରଙ୍କ ହାତରେ ରହିଲେ ସରକାର ଦେଶରେ ଉନ୍ନତପାଇଁ ଏହାକୁ ପରିଚାଳନା କରିବେ । ବ୍ୟକ୍ତିଗତ ଲାଭ ଏଥିରୁ ଦୂର କରିଯାଇ ପାରିବ । ଦ୍ୱିତୀୟରେ ଛୋଟ ଛୋଟ ଶିଳ୍ପ ଓ ବାଣିଜ୍ୟ, ଗ୍ରାମ୍ୟ ଓ କୁଟିର ଶିଳ୍ପ, କୃଷି ଓ ବଣ୍ଟାକରଣ ବ୍ୟବସାୟ ବ୍ୟକ୍ତିଗତ ପ୍ରଚେଷ୍ଟାଦ୍ୱାରା ପରିଚାଳିତ ହେବ । ସରକାର ଏହାର ନିୟନ୍ତ୍ରଣ କରିବେ ମାତ୍ର । ସମବାୟ ସୂତ୍ରରେ ଏହାର ଉନ୍ନତ କରିବାପାଇଁ ଚେଷ୍ଟା କରନ୍ତି । ଏହି ପ୍ରକାର ଅର୍ଥନୀତିର ବ୍ୟବସ୍ଥା ସରକାରଙ୍କ ଦ୍ୱାରା ପରିଚାଳିତ ହେଲେ ସରକାରଙ୍କର କ୍ଷମତା ଏତେ ବଢ଼ିବ ଯେ, ସରକାରଙ୍କ ସହିତ ଜନସାଧାରଣଙ୍କର କୌଣସି ସମ୍ପର୍କ ରହିବ ନାହିଁ । ସମତା ଫଳରେ ଅସାଧୁତାକୁ ବଢ଼ିବ । ତେଣୁ କେତେକ କ୍ଷେତ୍ରରେ ବ୍ୟକ୍ତିଗତ ପ୍ରଚେଷ୍ଟା ପ୍ରଦେଇ ଦେବା ଉଚିତ । ତୃତୀୟରେ ସମାଜବାଦୀଙ୍କର ସମାଲୋଚନାର ଗୁରୁତ୍ୱ ଖୁବ୍ ବେଶୀ । ଏହି ଯୋଜନା ମାଧ୍ୟମରେ ଉତ୍ପାଦନ ନିୟନ୍ତ୍ରଣ କରିବ । ପ୍ରଥମେ ଦେଶର ଅଭାବର ଏକ ତାଲିକା କରିବ । ଦ୍ୱିତୀୟରେ ଲୋକଙ୍କର କେତେ ଜଣ ଦରକାର, ଖାଦ୍ୟ ବସ୍ତ୍ର ଏବଂ ଦ୍ରବ୍ୟ ଜଣାଯିବ । ଦେଶର ଅଭାବକୁ ପୂର୍ଣ୍ଣ କେଉଁ କେଉଁ ଅଭାବ ପୂରଣ କରିଯାଇ ପାରିବ, ତାର ଖଣ୍ଡା ତାଲିକା ହେବ । ପ୍ରଥମେ ଅଳ୍ପ ଦରକାରୀ ଅଭାବ ପୂରଣ ପୂରଣ ହେବ. ସେଥିପାଇଁ ଉତ୍ପାଦନ ପ୍ରଣାଳୀ ନିୟନ୍ତ୍ରିତ ହେବ । ଏହ ହେଲା ସମାଜବାଦୀର ମୋଟାମୋଟି ପନ୍ଥା । ବାଂଲାର ଏମିକବାଲ ସାଧାରଣତଃ ଏହି ନୀତିରେ ତାଙ୍କ ଦେଶର ସମାଜର ପୁନର୍ଗଠନ କରୁଥାନ୍ତି । ପୁରାତନ ଓ ନୂତନ ଭିତରେ ଯେଉଁ ସଂଘର୍ଷ ଚାଲିଛି, ତା ନାନାକାରଣରୁ ତାହାର ସମାଧାନ ହେଉନାହିଁ । ଗ୍ରୀସିବଦଳ

ପାର୍ଲିଅମେଣ୍ଟର ଶାସନ ସାହାଯ୍ୟରେ ସମାଜର ପରିବର୍ତ୍ତନ
କରୁଛନ୍ତି । ଆଇନ ନାନା ଦାବିକୁ ନେଇ କୌଶଳ ଏବଂ ସମସ୍ୟାର
ସମାଧାନ କରିବା ସଭ୍ୟତାର ଶାନ୍ତ ପନ୍ଥା ନୁହେଁ ।

## ସମାଜବାଦ ଓ କମ୍ୟୁନିଷ୍ଟବାଦ

ସମାଜବାଦର ଯେଉଁ ନୀତି ଓ ଉଦ୍ଦେଶ୍ୟ ପ୍ରଥମେ ଆଲୋଚନା
କରାହେଲା, ତାହାସବୁ କମ୍ୟୁନିଷ୍ଟବାଦ ପାଇଁ ପ୍ରଯୁଜ୍ୟ । ସମାଜବାଦ
ଓ କମ୍ୟୁନିଷ୍ଟବାଦର ଉଦ୍ଦେଶ୍ୟ ନେଇ ବେଶୀ କିଛି ପାର୍ଥକ୍ୟ ନାହିଁ ।
କିନ୍ତୁ ପନ୍ଥା ନେଇ ଯେଉଁ ପ୍ରଭେଦ ଅଛି, ସେଥିରେ ସହଯୋଗ
ଅସମ୍ଭବ । କମ୍ୟୁନିଷ୍ଟମାନେ ହିଂସା ସାହାଯ୍ୟରେ ସମାଜର ପରିବର୍ତ୍ତନ
କରିବାକୁ ଚାହାନ୍ତି । ଶୋଷଣ ଓ ଶ୍ରେଣୀ ଭିତରେ ସଂଘର୍ଷ ସୃଷ୍ଟି କରି
ଗୋଟିଏ ଶ୍ରେଣୀ ବିପ୍ଳବରେ ଅନ୍ୟ ଶ୍ରେଣୀର ମୁଣ୍ଡକୁ ଲୁପ୍ତ
କରିବା କମ୍ୟୁନିଷ୍ଟମାନଙ୍କର ଲକ୍ଷ୍ୟ । ଶ୍ରେଣୀ ସଂଘର୍ଷ ସେମାନଙ୍କର
ପନ୍ଥା । ଏହି ଶ୍ରେଣୀ ସଂଘର୍ଷ ସାହାଯ୍ୟରେ ସେମାନେ ସର୍ବହରାର
ଏକଛତ୍ର ଶାସନ ପ୍ରତିଷ୍ଠା କରନ୍ତି । ଏକଛତ୍ର ଶାସନ ଦ୍ୱାରା ସର୍ବ-
ହରାର ପ୍ରତିନିଧି ଭାବରେ କମ୍ୟୁନିଷ୍ଟ ପାର୍ଟି ଦେଶର ଶାସନ
ପରିଚାଳନା କରେ । ବିରୋଧକୁ ପ୍ରଶ୍ରୟ ଦିଆଯାଏ ନାହିଁ । କାରଣ
ସେମାନେ ବିଶ୍ୱାସ କରନ୍ତି ଯେ କମ୍ୟୁନିଷ୍ଟ ରାଜ୍ୟରେ ଦୁଇଟି ଶ୍ରେଣୀ
ରହିପାରିବେ ନାହିଁ ଓ ଗୋଟିଏ ଶ୍ରେଣୀର ଲୋକମାନଙ୍କ ଭିତରେ ମତ-
ଦ୍ୱୈଧର ସମ୍ଭାବନା ନାହିଁ । ଋଷିଆର ଇତିହାସ ଯଦିଓ ଏହାର
ଓଲଟା କଥା କହୁଛି, ତଥାପି ସେହି ନୀତି ଦୃଷ୍ଟିରୁ ସେମାନେ
ଏକଛତ୍ର ଶାସନ ସାହାଯ୍ୟରେ ସଂସାରରେ ସମାଜର ପରିବର୍ତ୍ତନ
ଆଣିବାରେ ଲାଗିଛନ୍ତି । କିନ୍ତୁ ସମାଜବାଦୀମାନେ ଆଇନ ଦ୍ୱାରା
ସମାଜକୁ ବଦଳାଇବାକୁ ଚାହାନ୍ତି । ସେମାନଙ୍କର ଶିକ୍ଷାନୀତିରେ

ସ୍ୱାର୍ଥ ଅଛି । ପାର୍ଲିୟାମେଣ୍ଟ ମାଧ୍ୟମରେ ସମାଜବାଦ ପ୍ରତିଷ୍ଠିତ ହୋଇପାରିବ ବୋଲି ଏମାନଙ୍କର ଧାରଣା । ଫେବିଅନ ସୋସାଇଟି, ଜନଗଣଙ୍କ ଉପରେ ଏମାନଙ୍କର ମଧ୍ୟ ବିଶ୍ୱାସ ଅଛି । ହିଂସା ମାର୍ଗରେ ନଯାଇ ବିରୋଧୀଙ୍କୁ ମୂଳୋତ୍ପାଟନ ନକରି, ଜନଚେତନା ମାଧ୍ୟମରେ ସମାଜର ଆମୂଳ ପରିବର୍ତ୍ତନ କରିବାପାଇଁ ଏମାନେ ଇଚ୍ଛୁକ । ପ୍ରଥମେ ମାକ୍‌ଡୋନାଲ୍‌ଡ଼ ଥରେ କହିଥିଲେ ଯେ ସମାଜବାଦ ଶ୍ରେଣୀ ଚେତନା ସୃଷ୍ଟି ନକରି ଜନଚେତନା ସୃଷ୍ଟି କରେ । ଶ୍ରେଣୀ ଚେତନାରେ ସଂଘର୍ଷ ଲାଗେ । ଜନଚେତନାରେ ସହଯୋଗ ମିଳେ । ସଂଘର୍ଷଠାରୁ ସହଯୋଗ ଉନ୍ନତ ଓ ସମୟ ସାପେକ୍ଷ । କିନ୍ତୁ ଯାହା ସଂଘର୍ଷରେ ଆରମ୍ଭ ହୁଏ, ତାହାର ସଂଘର୍ଷରେ ଶେଷ ହୁଏ । ଯାହା ସହଯୋଗରେ ଗଢ଼ି ଉଠେ, ତାହା ଚିରନ୍ତନ ରହେ । ତେଣୁ ସମାଜବାଦୀମାନେ ସହଯୋଗ ମାଧ୍ୟମରେ ସମାଜର ପରିବର୍ତ୍ତନ କରିବାକୁ ଚାହାନ୍ତି । ସରକାରୀ ନିୟନ୍ତ୍ରଣ ଉପରେ ଏମାନଙ୍କର ବିଶ୍ୱାସ ଥିଲେ ମଧ୍ୟ କମ୍ୟୁନିଷ୍ଟ ମାନଙ୍କ ପରି ସରକାରଙ୍କୁ ଦେବତା ଭଳି ଏମାନେ ପୂଜା କରୁନାହାନ୍ତି । ତେଣୁ ଅନେକ ସମାଜବାଦୀ ସରକାରୀ କ୍ଷମତା କମାଇବାପାଇଁ ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ବିକେନ୍ଦ୍ରୀକରଣର ପ୍ରସ୍ତାବ ମଧ୍ୟ ଦେଉଛନ୍ତି । ଅବଶ୍ୟ କମ୍ୟୁନିଷ୍ଟମାନେ ଭାବନ୍ତି ଯେ ସର୍ବହରାର ଏକଛତ୍ର ଶାସନ ଏକ ଅସ୍ଥାୟୀ ଜିନିଷ । ଏକଛତ୍ର ଶାସନ ମାଧ୍ୟମରେ ଯେତେବେଳେ ଏକ ଶ୍ରେଣୀହୀନ ସମାଜ ଗଢ଼ି ଉଠିବ, ସେତେବେଳେ ଆଉ ରାଷ୍ଟ୍ରର ଦରକାର ହେବନାହିଁ । ରାଷ୍ଟ୍ର ଆପେ ଆପେ ଲୋପ ପାଇଯିବ । ଏହା ଥିଲା ମାର୍କ୍ସଙ୍କ ତତ୍ତ୍ୱ । କିନ୍ତୁ ଋଷିଆରେ ରାଷ୍ଟ୍ର କ୍ଷମତା ଘଟିବା ବଢ଼ୁଛି, କମିନାହିଁ । ସେ ଯାହାହେଉ, ଏଠି ଏତିକି ଉଲ୍ଲେଖ ଯଥେଷ୍ଟ ହେବ ଯେ ନେତାମାନେ ସମାଜବାଦୀଙ୍କର ସ୍ୱାର୍ଥ

କରନ୍ତି, ସେମାନେ ଗଣତାନ୍ତ୍ରିକ ଉପାୟରେ ସମାଜର ପୁନର୍ଗଠନ କରିବାକୁ ଚାହାନ୍ତି । ଯେଉଁମାନେ କମ୍ୟୁନିଷ୍ଟବାଦରେ ବିଶ୍ବାସ କରନ୍ତି, ସେମାନେ ଏକଛତ୍ର ଶାସନ କରିଅଥେ ଜୋର ଜବରଦସ୍ତି ସମାଜକୁ ପରିବର୍ତ୍ତନ କରିବାକୁ ଚାହାନ୍ତି । ଗୋଟିଏ ମନୁଷ୍ୟର ବୁଦ୍ଧି ଓ ବିବେକ ଉପରେ ନିର୍ଭର କରେ, ଅନ୍ୟଟି ମନୁଷ୍ୟର ପଶୁ ଶକ୍ତି ଉପରେ ଆସ୍ଥା କରେ । ଏ ପର୍ଯ୍ୟନ୍ତ ପଶୁ ଶକ୍ତି ବଳୀୟାନ ହୋଇ ରହିଛି । ପଶୁଶକ୍ତିକୁ ପଶୁଶକ୍ତି ସାହାଯ୍ୟରେ ଭେଟିବାକୁ ହେବ ନା ବୁଦ୍ଧି ବିବେକ ଦ୍ୱାରା ପରାସ୍ତ କରିବାକୁ ହେବ, ତାହା ଆମମାନଙ୍କ ଆଗରେ ଏକ ବଡ଼ ଚ୍ୟାଲେଞ୍ଜ । ଏହି ଚ୍ୟାଲେଞ୍ଜକୁ ଆମେ କିପରି ଭାବରେ ସମାଧାନ କରୁଛୁ, ତା'ରି ଉପରେ ଭବିଷ୍ୟତର ମନୁଷ୍ୟତା ପ୍ରଗତିର ନିର୍ଭର କରୁଛି ।

---

# ଗାନ୍ଧିଜୀ ଓ ସାମ୍ୟବାଦ

ସାମ୍ୟବାଦଟା ଆଜିକାଲି ଏପରି ଫେଶନ୍ ହୋଇଛି ଯେ ଅନେକ ଲୋକ ଗାନ୍ଧିଜୀଙ୍କୁ ମଧ୍ୟ ସାମ୍ୟବାଦୀ ବୋଲି କହିବାକୁ ଆରମ୍ଭ କଲେଣି । ନିଜକୁ ସାମ୍ୟବାଦୀ ନ ବୋଲାଇଲେ ଯେପରି ସମସ୍ତେ 'ପ୍ରଗ୍ରଥନ' ବୋଲି କହିବେ । ପ୍ରତ୍ୟେକ ପ୍ରଗତିଶୀଳ ଲୋକର ସାମ୍ୟବାଦୀ ହେବା ଉଚିତ—କାରଣ ସାମ୍ୟବାଦ ବ୍ୟତୀତ ଅନ୍ୟ କୌଣସି ସମାଧାନ ପ୍ରଗତିଶୀଳ ହୋଇ ପାରେ ନା । ଏଣୁ ଗାନ୍ଧିଜୀଙ୍କ ସମ୍ମାନ ରକ୍ଷା କରିବା ପାଇଁ ଏମାନେ ଚେଷ୍ଟିତ । ଏମାନେ ଗାନ୍ଧିଜୀଙ୍କ ଲେଖା ଭିତରୁ ଖୋଜି ଖୋଜି ଦୁଇ ଚାରି ବଚନ ଉଦ୍ଧାର କରି ପ୍ରମାଣ କରୁଛନ୍ତି ଯେ ନା, ଗାନ୍ଧିଜୀ ସନାତନୀ ନୁହନ୍ତି—ସେ ମଧ୍ୟ ସାମ୍ୟବାଦ କଥା କହୁଛନ୍ତି—ସାମ୍ୟବାଦର ପୂଜା କରୁଛନ୍ତି । ଅନ୍ୟପକ୍ଷେ ଯେଉଁମାନେ ଗାନ୍ଧିଜୀଙ୍କଠାରୁ ସାମ୍ୟବାଦକୁ ବଡ଼ ଭାବିବାକୁ ଚାହୁଁଛନ୍ତି, ସେମାନେ ଗାନ୍ଧିଜୀଙ୍କର ଉକ୍ତି ଉଦ୍ଧାର କରି ଗାନ୍ଧିଜୀ ଓ ସାମ୍ୟବାଦ ଭିତରେ ଯେଉଁ ଫରକ ଅଛି, ତାର ନମୁନା ଦେଉଛନ୍ତି । ଗୋଟିଏ ପକ୍ଷ ଗାନ୍ଧିଜୀଙ୍କ ପ୍ରତି ସହାନୁଭୂତ ଓ ଅନ୍ୟପକ୍ଷ ସାମ୍ୟବାଦ ପ୍ରତି ଅବାଧ ଭକ୍ତ । ଏ ଦୁଇ ଶ୍ରେଣୀର ଗୃପମାନେ ଖପି ହୋଇ ଗାନ୍ଧିଜୀ ଯେପରି ପ୍ରୟୋଜନ ହୋଇ ନିଜର ନୀତିକୁ ସମର୍ଥନ କରିବାକୁ ବସିଛନ୍ତି, ସେଥିରେ ଆମେ ତାଙ୍କୁ ଉଦ୍ଧାର ନ ଦେଲେ ଅଜ୍ଞ ରହିବା ନାହିଁ । ଗାନ୍ଧିଜୀଙ୍କୁ ଆମେ ରାଜନୈତିକ ଦୃଷ୍ଟି କୋଣରେ ଦେଖି ବିଚାର କରିବା । କାରଣ ଗାନ୍ଧିଜୀ ରାଜନୀତିରେ ଥିଲେ ମଧ୍ୟ ରାଜନୀତିଜ୍ଞ ନୁହନ୍ତି । ଅର୍ଥନୈତିକ ସମସ୍ୟା ବିଷୟରେ ମତ ଦେଇଥିଲେ ମଧ୍ୟ ଅର୍ଥନୀତିଜ୍ଞ

କୁହନ୍ତି । ଗାନ୍ଧିଜୀଙ୍କର ଦୋଷ କଥା କହିଲେ ଅନେକ ଲୋକ
ହୁଏତ୍ ଖଡ୍‌ଗହସ୍ତ ହେବେ—ବିଶେଷତଃ ଯେଉଁମାନେ ନିଜକୁ
ଗାନ୍ଧିବାଦୀ ବୋଲି କହି ଗର୍ବ ଅନୁଭବ କରନ୍ତି । ତଥାପି ଆମେ
କହିବୁ ଯେ ତାଙ୍କର ଗୋଟିଏ ଦୋଷ ଥିଲା । ସେ ରାଜନୀତି ଓ
ଅର୍ଥନୀତି ଭଲ ଜାଣି ନ ଥିଲେ । ମାର୍କ୍ସ ଏଙ୍ଗେଲ୍ସ ଓ ମାର୍ଶାଲଙ୍କ ନୀ-
ତିସବୁ ସେ ଶୁଣିଥିଲେ କି ନାହିଁ ସନ୍ଦେହ । କାରଣ ଗାନ୍ଧିଜୀ ରାଜନୀତି ବା
ଅର୍ଥନୀତିରେ ଗବେଷଣା କରି ଡକ୍ଟରେଟ୍ ଉପାଧି ପାଇବାକୁ ଚାହିଁ ନ
ଥିଲେ । ରାଜନୀତିରେ ଥାଇ ମଧ୍ୟ ରାଜନୀତି ତାଙ୍କର ପେଶା ନ ଥିଲା ।
ସ୍ପଷ୍ଟ କଥାରେ କହିଲେ ସେ ଥିଲେ ଜଣେ ସମାଜ ସୁଧାରକ ।
ସମାଜର ପ୍ରତ୍ୟେକ ବିଭାଗରେ ସୁଧାର କରିବାକୁ ସେ ଉଦ୍ୟମ
କରିଥିଲେ । ତେଣୁ ବିବାହଠାରୁ ଆରମ୍ଭ କରି ଖାଦ୍ୟାହାର ପର୍ଯ୍ୟନ୍ତ
ସବୁ କ୍ଷେତ୍ରରେ ଲୋକେ ତାଙ୍କ ମତ ନେଉଥିଲେ । ସେଥିପାଇଁ ମଧ୍ୟ
ଗାନ୍ଧିଜୀଙ୍କୁ ଅନେକେ ସର୍ବଜ୍ଞ ବୋଲି କହନ୍ତି । ଆଧୁନିକ ମନୁଷ୍ୟର
ମାନଦଣ୍ଡରେ ବିଚାର କଲେ ଦେଖାଯିବ ଯେ ବ୍ୟକ୍ତିଗତ ଜୀବନ ଓ
ସାମାଜିକ ଜୀବନ ପୃଥକ । ବ୍ୟକ୍ତିଗତ ଜୀବନରେ ମନୁଷ୍ୟ ଯେଉଁ
ନୀତି ଅନୁସରଣ କଲେ ମଧ୍ୟ ସାମାଜିକ ଜୀବନରେ ତାହା ଠିକ୍ ହୋଇ
ପାରେନି, ତା ହେଲେ ତା ବିଷୟରେ ଆମର କିଛି କହିବାର ନାହିଁ ।
ମନୁଷ୍ୟ ସକାଳେ ପୂଜା କରୁଛି, ଦ୍ୱିପହରରେ ବ୍ୟବସାୟ କରି
କଳାବଜାର କରୁଛି, ସନ୍ଧ୍ୟାବେଳେ ସଭାରେ ସଭାପତି ହୋଇ
ସମାଜ ସଂସ୍କାର ପାଇଁ ବକ୍ତୃତା ଦେଉଛନ୍ତି । ଏଥିରେ ଆମେ କିଛି
ଖରାପ ଥିବା ପରି ଜାଣି ପାରୁନୁ । ସମାଲୋଚକମାନେ କଳାବଜାର
କଥା ଉଠାଇଲେ ଆମେ ସ୍ପଷ୍ଟ କରି ତାକୁ ଖଣ୍ଡନ କରୁଛୁ । ଅନ୍ୟ-
ମାନେ ତ କଳାବଜାର କରୁଛନ୍ତି—ସେ କଲେ କଣ ଦୋଷ ହେଲା ?
[illegible] ଡକ୍ଟର ଜୋଡ୍ ଓ ମିଷ୍ଟର ହାଲଡେନଙ୍କ ପରି

ଅନେମାନେ ଜୀବନରେ ଦୁଇ ପ୍ରକାର ଖେଳ ଖେଳୁଛେ । ତାଙ୍କୁ କେହୁ ଅପବାଦ ଦେଉ ନାହାନ୍ତି । ଗାନ୍ଧିଜୀ କିନ୍ତୁ ମନୁଷ୍ୟର ଭିନ୍ନ ଭିନ୍ନ ଭାଗରେ ସମନ୍ୱୟ ଆଣି ଜୀବନକୁ ଏକୀଭୂତ କରିବାକୁ (Integration) ଚାହୁଁଥିଲେ । ତେଣୁ ବ୍ୟକ୍ତିଗତ ଜୀବନ ଓ ସାମାଜିକ ଜୀବନ ମଧ୍ୟରେ ପ୍ରଭେଦ ସୃଷ୍ଟି କରିବାକୁ ଚାହୁଁ ନ ଥିଲେ । ଯୁବକ ପକ୍ଷରେ ଏହାକୁ ମାନିବା କଷ୍ଟ ହେଲା ଜଣା ପଡ଼ିଲା । ତେଣୁ ଗାନ୍ଧିଜୀଙ୍କୁ ପଛୁଆ (back-dated) ବୋଲି କହି ଦିଆଗଲା । ଏ ଯୁଗରେ ତେଲ ପୁରାଣଯୁଗର ସତୀତ୍ୱର କଥା କହିଲେ ଚଳିବ ? କେବଳ ପେଟକୁ ଚାହେଁ । ଗାନ୍ଧିଜୀ ମଧ୍ୟ ଅତି ପୁରୁଣା ଲୋକ କହିଲେ । ଗାନ୍ଧିଜୀ ଅତି ସରଳ ଭାଷାରେ ଅତି ସହଜ କଥା ପ୍ରଚାର କରୁଥିଲେ । ସେହି ସବୁ କଥା ଧର୍ମ ଗ୍ରନ୍ଥରେ ଲେଖା ଅଛି । କୃଷ୍ଣ ଅର୍ଜୁନଙ୍କୁ ଉପଦେଶ ଦେଇଥିଲେ—ସେହି କାଳର କଥା । ସେଥିରେ ଐତିହାସିକ ବସ୍ତୁବାଦ ନାହିଁ କି ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ନାହିଁ—ସର୍ବହରାର ବିପ୍ଳବ ନାହିଁ କି ସର୍ବହରାର ଏକଛତ୍ର ଶାସନ ନାହିଁ । ଯାହା ଅନେ ଅନେକ ଶୁଣିଲୁଣି, ତାକୁ ଅଳ୍ପ ଥରେ ଶୁଣିଲେ କି ଆକର୍ଷଣ ମିଳିବ ! ନୂଆ ନ ମିଳିଥିବ, ବୁଝିପାରୁ ନ ଥିବ, ବୁଝିବା ପାଇଁ ଟୀକା ଖୋଜିବା ଦରକାର ପଡୁଥିବ, ତାହେଲେ ସିନା ଭଲ ଲାଗିବ । ଯୁବକ ମନ ଚପଳ । ଗୁରୁଜନଙ୍କ କଥା ନୀରସତା ଆଣେ । ଗାନ୍ଧିଜୀ କିନ୍ତୁ ଯୁବକମାନଙ୍କର ଚେତନା ସୃଷ୍ଟି କରି ପାରିଲେ ନାହିଁ । ସେ ମସ୍ତିଷ୍କର ଭୁକ୍ତି ଦେଇ ନ ଥିବା ଜାତୀୟ କଥା ଭାବିଲେ—ପ୍ରତ୍ୟେକ ପାଇଁ ଖାଦ୍ୟ ନ ଯୋଗାଇ ହୃଦୟକୁ ସ୍ପର୍ଶ କରିବାକୁ ଚାହିଁଲେ । ତେଣୁ ଶିକ୍ଷିତ ଯୁବକମାନେ ଗାନ୍ଧିଜୀଙ୍କ କଥା ନ ଶୁଣି, ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଉପରେ ବହି ପଢ଼ିଲେ । ତେଣୁ ଗାନ୍ଧିଜୀଙ୍କ ଭାଷାରେ

ଭିନ୍ନଭିନ୍ନ ଲୋକଙ୍କର ମତ ପ୍ରକାଶ ପାଇଲା । କିଏ କହୁଛି ସେ ଅବୋଧ୍ୟ, କିଏ କହୁଛି ସେ ମହର୍ଷି, କିଏ କହୁଛି ସେ ସନ୍ନ୍ୟାସୀ, କିଏ କହୁଛି ସେ ଦେବତା, ଆଉ କିଏ କହୁଛି ସେ ପୁଞ୍ଜିବାଦ ଓ ସାମନ୍ତବାଦ ସପକ୍ଷବାଦୀ । ଗୋଟିଏ ପକ୍ଷ ମତର ଦୃଷ୍ଟିରେ • ସିଏ ସେ ପୂଜା ପାଉଛନ୍ତି—ଅନ୍ୟପକ୍ଷ ପ୍ରଚଣ୍ଡ ଶତ୍ରୁ ବୋଲି • ଗାଳି ଖାଉଛନ୍ତି । ଅତି ଆଶ୍ଚର୍ଯ୍ୟର କଥା ଯେ ଗାନ୍ଧିଜୀ ଏତେ ସରଳ ଭାଷାରେ ଏତେ ସହଜ କଥା କହୁଥିଲେ ମଧ୍ୟ ଅବୋଧ୍ୟ ହୋଇ ରହୁଛନ୍ତି ଓ ମାର୍କସ ଏତେ କଷ୍ଟ କଥା ଏତେ କ୍ଲିଷ୍ଟ ଭାଷାରେ କହୁଥିଲେ ମଧ୍ୟ, ମାର୍କସଙ୍କୁ ବୁଝିବାରେ କାହାରି ଗୋଳମାଳ ହେଉ ନାହିଁ । ଆମର ଅର୍ଥ ବୋଧହୁଏ ଠିକ୍ ହେଉନି । ଗାନ୍ଧିଜୀଙ୍କୁ ଲୋକେ ବୁଝୁଛନ୍ତି । କିନ୍ତୁ ତାଙ୍କର ସେଇ ବାଟ ଆଦର୍ଶକୁ ଧରି ପାରୁ ନାହାନ୍ତି । ସତ କଥା ସମସ୍ତେ ଭଲ ବୋଲି ଜାଣନ୍ତି—କିନ୍ତୁ ଜୀବନରେ ପାଳି ପାରନ୍ତି ନାହିଁ । ସେଇପରି ଗାନ୍ଧିଜୀଙ୍କ କଳ୍ପନାକୁ ଠିକ୍ ବୋଲି ଧରନ୍ତି—କିନ୍ତୁ ସେଇ ବାଟ ଯିବାକୁ ଶକ୍ତି ପାଏ ନାହିଁ । ସାମ୍ୟବାଦ ତ ଏଇ ପାଖର କଥା । ଚେଷ୍ଟା କଲେ ମିଳିଯିବ । ଦେଖେତ ଦେଶ ସେ ବାଟରେ ଯାଉଛନ୍ତି ବୋଲି କହିଲେଣି । ଗତାନୁଗତିକ ଭାବରେ ସେଇ ବାଟରେ ନ ଯାଇ, ଅନ୍ୟ ଏକ ନୂଆ ବାଟ କାଟି ଯିବା ଦରକାର କଣ ? ତେଣୁ ଗାନ୍ଧିଜୀ ସହଜ କଥା କହୁଥିଲେ ମଧ୍ୟ • କଷ୍ଟ ହୋଇ ରହୁଛନ୍ତି—ସାମ୍ୟବାଦ କଷ୍ଟ ହେଲେ ମଧ୍ୟ ସହଜ ଜଣାପଡ଼ୁଛି ।

## ସାମ୍ୟବାଦର ଲକ୍ଷ୍ୟ

ଗାନ୍ଧିଜୀଙ୍କର ଲକ୍ଷ୍ୟ ଓ ସାମ୍ୟବାଦର ଲକ୍ଷ୍ୟରେ ବହୁତ ଫରକ ଅଛି ବୋଲି ଅନେକ କହନ୍ତି । ସାମ୍ୟବାଦ ଏକ ଶ୍ରେଣୀହୀନ

ସମାଜର କଳ୍ପନା କରେ—ଯେଉଁ ଶ୍ରେଣୀହୀନ ସମାଜରେ ଶ୍ରେଣୀ
ଓ ଶ୍ରେଣୀ ମଧ୍ୟରେ ସଙ୍ଘର୍ଷ ରହିବ ନାହିଁ କି ଗୋଟିଏ ଶ୍ରେଣୀ ଅନ୍ୟ
ଶ୍ରେଣୀ ଉପରେ ନିଜର ଶୋଷଣ ଓ ଅତ୍ୟାଚାର ଜାରିକରି ପାରିବେ
ନାହିଁ । ପ୍ରତ୍ୟେକ ଲୋକ ନିଜର ଶକ୍ତି ଅନୁଯାୟୀ କାମ କରିବେ
ଓ ନିଜର ଦରକାର ଅନୁଯାୟୀ ମଜୁରି ପାଇବେ, ଲାଭ ଉଦ୍ଦେଶ୍ୟରେ
ଆଜି ଶିଳ୍ପ, ବ୍ୟବସାୟ ଓ ବାଣିଜ୍ୟ ଚାଲୁଛି । ସାମ୍ୟବାଦୀ ସମାଜରେ
ସମାଜର ହିତ ପାଇଁ ଶିଳ୍ପ, ବ୍ୟବସାୟ ଓ ବାଣିଜ୍ୟ ପରିଚାଳିତ
ହେବ । ବ୍ୟକ୍ତିଗତ ଲାଭ ପରିବର୍ତ୍ତେ ସମାଜର ଲାଭ ଉତ୍ପାଦନ
ପ୍ରଣାଳୀକୁ ପରିଚାଳିତ କରିବ । ସେହିପରି ଦେଶ ଓ ଦେଶ
ମଧ୍ୟରେ ପରସ୍ପର ଶତ୍ରୁତା ଅଛି, ତାହା ସାମ୍ୟବାଦରେ ଲୋପ ପାଇ-
ଯିବ । ସାମ୍ୟବାଦ ଦ୍ୱାରା ହିଁ ଆନ୍ତର୍ଜାତିକ ମୈତ୍ରୀ ଓ ସଦ୍‌ଭାବ
ସ୍ଥାପିତ ହୋଇପାରିବ । ସଙ୍କୀର୍ଣ୍ଣତା ଓ ସ୍ୱାର୍ଥପରତା ଭିନ୍ନ ଭିନ୍ନ
ଦେଶକୁ ଆଜି ମୃତ୍ୟୁର କବଳ ଦେଇଛି । ସାମ୍ୟବାଦ ଏହି ସ୍ୱାର୍ଥକୁ
ଦୂର କରି ବିଶ୍ୱମାନବ ସମାଜକୁ ପ୍ରୀତି ଓ ଭ୍ରାତୃତ୍ୱର ଅଖଣ୍ଡ ପ୍ରେମ
ବନ୍ଧନରେ ବାନ୍ଧି ରଖିବ । କେବଳ ଏତିକି ନୁହେଁ । ସାମ୍ୟବାଦ
ପ୍ରତିଷ୍ଠା ହେବାପରେ ରାଷ୍ଟ୍ରର କୌଣସି ଆବଶ୍ୟକତା ରହିବ ନାହିଁ ।
ରାଷ୍ଟ୍ର ଶୋଷଣର ଏକ ଯନ୍ତ୍ର । ପୁଞ୍ଜିବାଦୀ ସମାଜରେ ପୁଞ୍ଜିବାଦୀ
ମାନେ ରାଷ୍ଟ୍ର ସାହାଯ୍ୟରେ ଶୋଷଣକୁ ଅବାଧରେ ପରିଚାଳିତ କରୁଛନ୍ତି ।
ଏହି ପୁଞ୍ଜିବାଦକୁ ଲୋପ କରିବା ପାଇଁ ରାଷ୍ଟ୍ରର ଅଳ୍ପ ସାହାଯ୍ୟ
ଦରକାର ପଡ଼ିବ । ସର୍ବହରାମାନେ ସେତେବେଳେ ରାଷ୍ଟ୍ରକୁ ଦଖଲ
କରି ରାଷ୍ଟ୍ର ସାହାଯ୍ୟରେ ପୁଞ୍ଜିପତି ଓ ପ୍ରତିକ୍ରିୟାଶୀଳ ଲୋକମାନଙ୍କୁ
ନିପାତ କରିବେ । ସର୍ବହରା ଏକନାୟକତ୍ୱ ଫଳରେ ଯେତେବେଳେ
ଏକ ଶ୍ରେଣୀହୀନ ସମାଜ ପ୍ରତିଷ୍ଠା ହୋଇଯିବ, ସେତେବେଳେ ଆଉ
ରାଷ୍ଟ୍ରର ଆବଶ୍ୟକତା ଦରକାର ପଡ଼ିବ ନାହିଁ । ଏ ବିଷୟ ବୁଝା-

ମୋଟ ସାମ୍ୟବାଦର ଆଦର୍ଶ କଥା—ଯେଉଁ ଆଦର୍ଶ କାର୍ଯ୍ୟରେ ପରିଣତ ହେଉଁଠାରେ ହେଲେ ବାଧିତ ହୋଇ ନାହିଁ ।

## ଗାନ୍ଧିଜୀଙ୍କର ଲକ୍ଷ୍ୟ

କିନ୍ତୁ ସାମ୍ୟବାଦର ଏହି ଆଦର୍ଶ ଦୃଷ୍ଟିରୁ ଗାନ୍ଧିଜୀଙ୍କ ଆଦର୍ଶ ଆଲୋଚନା କଲେ ଦେଖାଯିବ ଯେ ଗାନ୍ଧିଜୀ ଓ ସାମ୍ୟବାଦ ମଧ୍ୟରେ ବେଶୀ କିଛି ଫରକ ନାହିଁ । ଗାନ୍ଧିଜୀ ଶ୍ରେଣୀହୀନ ଓ ବର୍ଣ୍ଣହୀନ ସମାଜ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ । ସମାଜରୁ ଶୋଷଣ ଦୂର କରି ପ୍ରତ୍ୟେକଙ୍କୁ ସମାନ ସୁବିଧା ଓ ସୁଯୋଗ ଦେବା ତାଙ୍କର ଉଦ୍ଦେଶ୍ୟ ଥିଲା । ଗାନ୍ଧିଜୀଙ୍କ କଳ୍ପିତ ସମାଜରେ ଲଢ଼େଇର ତ ନାମ ଛିଟେ ନାହିଁ । କାରଣ ପ୍ରତ୍ୟେକ ଲୋକ ଅନ୍ୟପାଇଁ କାମ କରିବ—ଅନ୍ୟର ସ୍ୱାର୍ଥକୁ ନିଜର ସ୍ୱାର୍ଥ ବୋଲି ମନେ କରିବ । ଏସବୁ ଜଣା ଶୁଣା କଥା । ଏଥିପାଇଁ ଅଧିକ ପ୍ରମାଣ ଦେଖାଇବାକୁ ପଡ଼ିବ ନାହିଁ । କିନ୍ତୁ କେତେକ ଲୋକ ଭାବନ୍ତି ଯେ ସାମ୍ୟବାଦ ପରି ଗାନ୍ଧିଜୀଙ୍କର ଆନ୍ତର୍ଜାତିକ ମନୋଭାବ ନ ଥିଲା । ସେ କେବଳ ଭାରତ କଥା ଚିନ୍ତା କରୁଥିଲେ । ଭାରତ ତାଙ୍କର କର୍ମକ୍ଷେତ୍ର ଥିଲା ସତ କିନ୍ତୁ ତାଙ୍କର ଚିନ୍ତାଧାରା ଭାରତ ପ୍ରତି ଯେତିକି ପ୍ରଯୁଜ୍ୟ ଥିଲା, ଅନ୍ୟଦେଶମାନଙ୍କ ପ୍ରତି ସେତିକି ପ୍ରଯୁଜ୍ୟ ଥିଲା । ସେଥିପାଇଁ ଅନେକ ଲୋକ କହନ୍ତି ଯେ ଗାନ୍ଧିଜୀ କୌଣସି ଦେଶର ନୁହନ୍ତି—ସେ ସମୁଦାୟ ମାନବ ସମାଜର । ମନୁଷ୍ୟ ଓ ମନୁଷ୍ୟ ଭିତରେ ଫରକ ଅଛି ବୋଲି ସେ ଭାବି ପାରୁନଥିଲେ । ତାଙ୍କର ପ୍ରାର୍ଥନା ସଭାରେ ସେ ଗୀତା, କୋରାନ୍ ଓ ବାଇବେଲରୁ ବଚନ ଉଦ୍ଧାର କରି ଆବୃତ୍ତି କରୁଥିଲେ । ଗୋଷ୍ଠୀ ଜୀବନ ଓ ବ୍ୟକ୍ତି ଜୀବନରେ ସମନ୍ୱୟ ଆଣିବାପାଇଁ ସେ ଯେଉଁ ଉଦ୍ୟମ କରୁଥିଲେ, ତାହା ଅନ୍ୟ କେହି ଚିନ୍ତା କରିଥିଲେ

ତ ନାହିଁ ସନ୍ଦେହ । ବ୍ୟକ୍ତିଗତ ଜୀବନ ଓ ଗୋଷ୍ଠୀଗତ ଜୀବନରେ ପାର୍ଥକ୍ୟ ଥିବା ଯୋଗୁଁ ଅନ୍ଧ ଦେଶ ଓ ଦେଶ ଭିତରେ ସଂଘର୍ଷ ସୃଷ୍ଟି ହୋଇ ପାରୁଛି । ଜଣେ ଯଦି ଚୋର ହୁଅନ୍ତି, ତାଙ୍କୁ ଆମେ ଚୋର ବୋଲି ଘୃଣା କରୁ—ସମାଜରେ ସେ ଘୃଣିତ ହେଉଛି । ତାଙ୍କୁ ଦଣ୍ଡ ଦିଆଯାଇ ବୋଲି ଗୃହଅଭେଦ ପାଠିତ୍ରଣ ଦେଉଛୁ । ସେହିପରି ଯଦି କେହି ନିର୍ଯ୍ୟାତ କରେ ବା ତାହାଙ୍କୁ ଅତ୍ୟାଚାର, ତାହେଲେ ସେ ଦଣ୍ଡର ପାତ୍ର ହେଉଛି । କିନ୍ତୁ ଗୋଷ୍ଠୀ ସ୍ୱଭାବରେ ଚୋର, ନିର୍ଯ୍ୟାତ ଓ ବ୍ୟଭିଚାରୀଙ୍କୁ ଆମେ ସମର୍ଥନ କରୁଛୁ । ଯଦି କୌଣସି ଦେଶର ଲୋକେ ଅନ୍ୟ ଦେଶ-ଭିତରେ ଆକ୍ରମଣ କରି ସେଠି ଲୋକମାନଙ୍କ ଉପରେ ଅତ୍ୟାଚାର କଲେ, ସମ୍ପତ୍ତି ଲୁଣ୍ଠନ କଲେ, ନାରୀଙ୍କୁ ନିର୍ଯ୍ୟାତନା କଲେ, ତାହେଲେ ସେମାନେ ଆମର 'ବୀର ସୈନ୍ୟବାହିନୀ' ବୋଲି ପ୍ରଶଂସା ପାଉ-ଛନ୍ତି । ସେମାନଙ୍କୁ ଅଭ୍ୟର୍ଥନା କରାଯାଉଛି । କେବଳ ଦେଶ ଦେଶ ନୁହେଁ, ଜାତି ଜାତି ମଧ୍ୟରେ ମଧ୍ୟ ଏପରି ସମ୍ଭବ ହେଉଛି । ୧୯୪୭ ମସିହାର ଭାରତ ଓ ପାକିସ୍ଥାନ ଇତିହାସ ଦେଖିଲେ, ଏହାର ଅନେକ ଦୃଷ୍ଟାନ୍ତ ମିଳିବ । ନୂଆଖାଲିରେ ମୁସଲମାନମାନେ ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର କଲେ—ମୁସଲମାନଙ୍କ ଦୃଷ୍ଟିରେ ଏମାନେ ବୀର ହୋଇଗଲେ । ବିହାରରେ ହିନ୍ଦୁମାନେ ମୁସଲମାନଙ୍କ ଉପରେ ଅତ୍ୟାଚାର କଲେ—ସେମାନେ ସେଥିପାଇଁ ଧନ୍ୟବାଦ ପାଇଲେ । ସାଧାରଣ ବିହାର । ଠିକ୍ ସେହିପରି ଯେତେବେଳେ କଲିକତାରେ ହିନ୍ଦୁ ଓ ମୁସଲମାନମାନଙ୍କ ଭିତରେ ଦଙ୍ଗାହାଙ୍ଗାମା ହେଲା, ହିନ୍ଦୁମାନେ ଗୋଟିଏ ବୁଲୁଥିଲେ କେତେଜଣ ମୁସଲମାନ ମରନ୍ତି ଓ ମୁସଲମାନମାନେ ଦେଖି ବୁଲୁଥିଲେ କେତେଜଣ ହିନ୍ଦୁ ମରନ୍ତି । କିନ୍ତୁ ଗାନ୍ଧୀଜୀ ହିମାଳୟ ପରି ଅଟଳ

ବନ୍ଧୁ ମାନବ ସମାଜର ସେବା କରିବାରେ ଲାଗିଲେ । ତାଙ୍କ ପାଖରେ ହିନ୍ଦୁ ହିନ୍ଦୁ ନୁହେଁ, ମୁସଲମାନ ମୁସଲମାନ ନୁହେଁ, ଖ୍ରୀଷ୍ଟିଆନ ଖ୍ରୀଷ୍ଟିଆନ ନୁହେଁ । ସମସ୍ତେ ଭଗବାନଙ୍କର ସନ୍ତାନ— ସମସ୍ତଙ୍କର ସେ ସେବକ । ସମସ୍ତଙ୍କ ଆଖିରୁ ଲୁହ ପୋଛିବାକୁ ସେ ଉଦ୍ୟମ କରୁଥିଲେ (To wipe tear from every eyes.) । ଭାରତର ସାମ୍ପ୍ରଦାୟିକ ଦଙ୍ଗାହଙ୍ଗାମା କେବଳ ସେ ଯେଉଁ ବିଶ୍ୱପ୍ରେମର ପରିଚୟ ଦେଇ ଯାଇଛନ୍ତି, ତାହା ଇତିହାସରେ ମିଳିବ ନାହିଁ । ଗାନ୍ଧିଜୀ ସମ୍ପ୍ରଦାୟ ମାନବ ସମାଜକୁ ଏକ ବନ୍ଧ ଏକ ପ୍ରକାର ନୀତିରେ ସମସ୍ତଙ୍କୁ ପରିଚାଳିତ କରିବାକୁ ଚାହୁଁଥିଲେ । ତାଙ୍କର ନୈତିକତାରେ ଦ୍ୱୈତବାଦ ନ ଥିଲା । ସେଥିରୁ ପୃଥିବୀରେ ପଦ ଦଳିତ ଶ୍ରମମାନଙ୍କ ସମାଜକୁ ସ୍ନେହ ଓ ଭ୍ରାତୃତ୍ୱର ଅଟୁଟ ସୂତ୍ର ବନ୍ଧନରେ ବାନ୍ଧିବାକୁ ଚାହୁଁଥିଲେ, ସେ ହୋଇଛନ୍ତି ଗାନ୍ଧିଜୀ ।

## ରାଷ୍ଟ୍ରହୀନ ସମାଜ

ବାପୁ ବହୁଳ ରାଷ୍ଟ୍ରନୀତି । ଏଥିରେ ମଧ୍ୟ ସାମ୍ୟବାଦୀମାନଙ୍କ କଳ୍ପନା ପରି ଗାନ୍ଧିଜୀଙ୍କ କଳ୍ପନା ରାଷ୍ଟ୍ରହୀନ ସମାଜ ଆଡ଼କୁ ଯାଉଛି । ଏଥିପାଇଁ ଅନେକ ଲୋକ ଗାନ୍ଧିଜୀଙ୍କୁ 'anarchist' ବୋଲି କହନ୍ତି । ଗାନ୍ଧିଜୀଙ୍କର ବ୍ୟକ୍ତି ଉପରେ ବିଶ୍ୱାସ ଥିଲା । ଆଜି ଯେତେବେଳେ ଆମେ କ୍ଷମତାପନ୍ନ ପରି ଲୋକମାନଙ୍କର ମୂଲ୍ୟ ବିଚାର କରୁଛେ, ସେତେବେଳେ ଗାନ୍ଧିଜୀ ପ୍ରତ୍ୟେକ ଲୋକଙ୍କୁ ସମ୍ମାନ ଦେଉଥିଲେ । ଶିକ୍ଷିତ, ଅଶିକ୍ଷିତ, ଗାଉଁଲି ଓ ସହରୀ ପ୍ରତ୍ୟେକ ଲୋକର ଏକ ଆତ୍ମା ଅଛି ବୋଲି ଏଥିପାଇଁ ପ୍ରତ୍ୟେକ ଲୋକଙ୍କୁ ସମ୍ମାନ ଦେବାର କଥା । ଆଜି ସଂସ୍କୃତି ଜନସାଧାରଣଙ୍କ ଏକ ଅଙ୍ଗ

ବୋଲି ବିଚାର କରୁଥାଆନ୍ତି । ଗାନ୍ଧିଜୀ କିନ୍ତୁ ବ୍ୟସ୍ତ ଅଭୂ ଜନତାକୁ ଅଚ୍ଛୁଥିଲେ । ତେଣୁ ପ୍ରତ୍ୟେକ ଲୋକଙ୍କୁ ସମ୍ମାନ ଲଭା କରିବାପାଇଁ ଶାସନର ବିକେନ୍ଦ୍ରୀକରଣରେ ବିଶ୍ୱାସ କରୁଥିଲେ । ତାଙ୍କ ମତରେ ପ୍ରତ୍ୟେକ ଗାଁ ତାଙ୍କ ନିଜ କଥା ବୁଝିବେ—ନିଜର ଦରକାର ପାଇଁ ଅନ୍ୟ ସ୍ଥାନରେ ନିର୍ଭର କରିବେ ନାହିଁ । କେନ୍ଦ୍ର ଶାସନତନ୍ତ୍ର ଉପରୁ କେଣୀ କିଛି ହସ୍ତକ୍ଷେପ କରିପାରିବ ନାହିଁ । ଏହାକୁ- ଅନେକ ଗ୍ରାମ୍ୟ କମ୍ୟୁନିଜିମ୍ (village communism) ବୋଲି ଆଖ୍ୟା ଦେଇଥାନ୍ତି । ସେ ଯାହାହେଉ ସରକାରୀ କ୍ଷମତା କମାଇ ଲୋକ-ମାନଙ୍କ ଉପରେ ଶାସନର ଦାୟିତ୍ୱ ଛାଡ଼ିଦେବା ଗାନ୍ଧିଜୀଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । କିନ୍ତୁ ସେଥିପାଇଁ ଗାନ୍ଧିଜୀ ଅରାଜକତାର ପକ୍ଷରେ ନଥିଲେ । ସରକାରୀ କ୍ଷମତା କମାଇ ଲୋକମାନଙ୍କର ଦାୟିତ୍ୱ ବଢ଼ାଇବାକୁ ଚାହୁଁଥିଲେ ସତ, ଦେଶରେ ସେପରି ଆଇନ ଶାସନ ପ୍ରତିଷ୍ଠିତ ହୁଏ (rule of law), ସେଥିପାଇଁ ସେ ଦୃଷ୍ଟି ଦେଇଥିଲେ । ଗାନ୍ଧିଜୀ ନିଜେ ଆଇନ ଅମାନ୍ୟ କରିଥିଲେ । ଦକ୍ଷିଣ ଆଫ୍ରିକା ଓ ଭାରତର ଆଇନ ଅମାନ୍ୟ ଆନ୍ଦୋଳନ ସରକାର ବିରୁଦ୍ଧରେ ବିଦ୍ରୋହ ସୃଷ୍ଟି କରିଥିଲା । ତଥାପି ଗାନ୍ଧିଜୀ କହୁଥିଲେ ଯେ ଯେଉଁ ଆଇନ ନିଜର ବିବେକର ବିରୁଦ୍ଧରେ ଯାଉନାହିଁ, ତାକୁ ମାନିବାକୁ ହେବ । ନିଜକୁ ଅସୁବିଧା ହେଉଛି ବୋଲି ଆଇନ ଭଙ୍ଗ କରିଯାଇ ପାରିବନାହିଁ । ଆଇନ ଶୃଙ୍ଖଳା ଅଟେ । ଏହି ଶୃଙ୍ଖଳା ନରହିଲେ ଦେଶରେ ଅଶାନ୍ତି ସୃଷ୍ଟି ହୋଇଯିବ । ତେଣୁ ବିଦେଶୀ ସରକାର ଏ ଆଇନ କଲେ ମଧ୍ୟ, ତାକୁ ମାନିବାକୁ ପଡ଼ିବ । କିନ୍ତୁ ଗାନ୍ଧିଜୀଙ୍କ ମତରେ ଆଇନ ଶାସନ ଅର୍ଥ ଦେଶ ପ୍ରଚଳିତ ପ୍ରଥା । ଯେଉଁ ପ୍ରଥାରେ ଲୋକମାନେ ବଳି ଆସିଛନ୍ତି, ଯାହା ସର୍ବସାଧାରଣଙ୍କର ଆଦର ପାଉଛି. ଗାନ୍ଧି କହୁଥିଲେ

ଦେଶରେ ଶୃଙ୍ଖଳା ରହିବ ନାହିଁ, ସେଥିରେ ଅରାଜକ ଦେଖା ଯିବ। ପ୍ରତ୍ୟେକ ବ୍ୟକ୍ତିରେ ଅନ୍ତର ଭର ମନୁଷ୍ୟ ଜୀବନର ପ୍ରତ୍ୟେକ ବିଭାଗକୁ ନିୟନ୍ତ୍ରଣ କରିବାରେ ଗାନ୍ଧିଜୀ ପକ୍ଷପାତୀ ନଥିଲେ। ଏ ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଯେ ଗାନ୍ଧିଜୀ ସାମ୍ୟବାଦୀ ନୁହନ୍ତି। କାରଣ ସାମ୍ୟବାଦୀମାନେ ସରକାରୀ ସଂସ୍ଥା ସାହାଯ୍ୟରେ ସମାଜକୁ ବଦଳାଇବାକୁ ଚାହାନ୍ତି। କିନ୍ତୁ ଏଥିରେ ଏଠି ଭବିଷ୍ୟତ ଲକ୍ଷ୍ୟ କଥା ସ୍ୱୀକାର କରୁଛନ୍ତି। ଅନ୍ତତଃ ଯେଉଁ ସାମ୍ୟବାଦୀମାନେ ମାର୍କ୍ସଙ୍କ ମତରେ ବିଶ୍ୱାସ କରନ୍ତି, ସେମାନେ କହନ୍ତି ଯେ ମଧ୍ୟବର୍ତ୍ତୀ କାଳରେ ରାଷ୍ଟ୍ର କ୍ଷମତା ରହିବ ଓ ଭବିଷ୍ୟତରେ ରାଷ୍ଟ୍ରହୀନ ସମାଜ ପ୍ରତିଷ୍ଠା ହେବ। ଗାନ୍ଧିଜୀ ପ୍ରଥମରୁ ଶେଷ ପର୍ଯ୍ୟନ୍ତ ରାଷ୍ଟ୍ରର କ୍ଷମତା ନିୟନ୍ତ୍ରଣ କରି ସମାଜର ସଂସ୍କାର କରିବାକୁ ଚାହାନ୍ତି। ତେଣୁ ଭବିଷ୍ୟତ ଲକ୍ଷ୍ୟରେ ବେଶୀ କିଛି ପ୍ରଭେଦ ନ ଥିଲେ ମଧ୍ୟ ମଧ୍ୟବର୍ତ୍ତୀ ଅବସ୍ଥାରେ ଗାନ୍ଧିଜୀ ଓ ସାମ୍ୟବାଦର କୌଣସି ମିଳନ ନାହିଁ। ଏପରି ମଧ୍ୟବର୍ତ୍ତୀ ଅବସ୍ଥା କଥା ବର୍ତ୍ତମାନ ଆଲୋଚନା କରିବା।

## ହିଂସା ଓ ଅହିଂସା

ଯେବେ ଗାନ୍ଧିଜୀଙ୍କ ମତ ଓ ସାମ୍ୟବାଦରେ କିଛି ପ୍ରଭେଦ ଅଛି, ତାହାହେଲେ ତାହା କେବଳ ଏହି ପନ୍ଥା। ଯେଉଁ ପନ୍ଥାରେ ସାମ୍ୟବାଦୀମାନେ ନିଜର ଭବିଷ୍ୟତ ଲକ୍ଷ୍ୟ ହାସଲ କରିବାକୁ ଚାହାନ୍ତି, ଗାନ୍ଧିଜୀ ସେ ପନ୍ଥା ଅନୁସରଣ କରିବାକୁ ପ୍ରସ୍ତୁତ ନଥିଲେ। ସାମ୍ୟବାଦୀମାନଙ୍କ ମତରେ ଉଦ୍ଦେଶ୍ୟ ଭଲ ଥିଲେ ମଧ୍ୟପନ୍ଥା ଖରାପ ହେଲେ କିଛି ଯାଏ ଆସେ ନାହିଁ (End justifies means)। କିନ୍ତୁ ଗାନ୍ଧିଜୀ ଉଦ୍ଦେଶ୍ୟଠାରୁ ପନ୍ଥାକୁ ବେଶୀ ଜୋର ଦେଉଥିଲେ। ପନ୍ଥା

ବଳ ନହେଲେ, ଉଦେଶ୍ୟ ହାସଲ୍ ହୋଇ ପାରିବ ନାହିଁ ବୋଲି ସେ
ବାରମ୍ବାର ଗମ୍ଭୀର ସ୍ୱରରେ ଘୋଷଣା କରିଥିଲେ । ସେଥିପାଇଁ ଗାନ୍ଧିଜୀ
ସତ୍ୟ ଓ ଅହିଂସା ପ୍ରତି ଏତେ ଜୋର ଦେଉଛନ୍ତି । ହିଂସାରୁ ହିଂସା
ଜନ୍ମେ । ଯାହା ହିଂସାରେ ହାସଲ ହୁଏ ତାହା ହିଂସାରେ
ହିଁ ରକ୍ଷାହୁଏ । ଅନେକ ଏକଥା ଶୁଣି ନାକ ଟେକନ୍ତି । ଏସବୁ
ପୁରୁଣାକଥା । ଆମର ଉଦ୍ଦେଶ୍ୟ ମହତ ଥିଲେ ତେବେ କୌଣସି
ପନ୍ଥା ଅନୁସରଣ କଲେ ଯାଏ ଆସେ କଣ ? କିନ୍ତୁ ଗାନ୍ଧିଜୀଙ୍କ
ପକ୍ଷରେ ଦେଶର ସ୍ୱାଧୀନତାଠାରୁ ଅହିଂସା ଓ ସତ୍ୟର ଆଦର
ବେଶୀ ଥିଲା । କାରଣ ସେ ବୁଝିଥିଲେ ଯେ ହିଂସା ଦ୍ୱାରା
ସ୍ୱାଧୀନତା ପ୍ରତିଷ୍ଠା ହେଲେ, ହିଂସାଦ୍ୱାରାହିଁ ତାକୁ ରକ୍ଷା କରିବାକୁ
ପଡ଼ିବ । ଯେଉଁମାନେ ଅହିଂସା ଓ ସତ୍ୟକଥା ଶୁଣି ନାକ
ଟେକନ୍ତି, ସେମାନେ ଭାବନ୍ତି ଯେ ଅହିଂସା ଓ ସତ୍ୟ ଦ୍ୱାରା ସମାଜ
ସଂସ୍କାର କରିବା ସହଜ ନୁହେଁ, ଶତ୍ରୁ ବିରୁଦ୍ଧରେ ଲଢ଼େଇ କରିବା
ସହଜ ନୁହେଁ । କିନ୍ତୁ ଗାନ୍ଧିଜୀ ନିଜ ଜୀବନରେ ଦେଖେଇ ଦେଇ
ଯାଇଛନ୍ତି ଯେ ନ୍ୟାୟ ପନ୍ଥା ଅନୁସରଣ କରି ଅନ୍ୟାୟର ପ୍ରତିରୋଧ
କରିହେବ । ଏବଂ ଆହୁରି ବଡ଼ କଥା ଏହି ଯେ ହିଂସା ଓ ଅସତ୍ୟ
ପନ୍ଥାଠାରୁ ସତ୍ୟ ଓ ଅହିଂସା ପନ୍ଥା ଅଧିକ ଫଳପ୍ରଦ । କାରଣ
ସତ୍ୟ ଓ ଅହିଂସା ବ୍ୟତୀତ ହିଂସା ଓ ଅସତ୍ୟ ମଧ୍ୟ କାର୍ଯ୍ୟ କରି
ପାରିବ ନାହିଁ । ଯେଉଁମାନେ ଚୋର ବା ଡକାୟତି କରି
ଥାଅନ୍ତି, ସେମାନେ ନିଜମଧ୍ୟରେ ଅନ୍ତତଃ ବିଶ୍ୱାସ ରଖନ୍ତି । ଗୋଟିଏ
ଚୋର ଧରା ପଡ଼ିଲେ ସେ ଅନ୍ୟ ଚୋରମାନଙ୍କ ନାଁ କହେନାହିଁ ।
ଚୋର ଓ ଡକାୟତ ଦଳ ଭିତରେ ଏତିକି ବିଶ୍ୱାସ ନରହିଲେ
ଚୋରି ଓ ଡକାୟତି ମଧ୍ୟ ହୋଇପାରିବ ନାହିଁ । ତେଣୁ ଅସତ୍ୟ
କାମପାଇଁ ସତ୍ୟର ଦରକାର ହେଉଛି । ସେହିପରି ହିଂସା ପାଇଁ

ଅହିଂସାର ମଧ୍ୟ ଦରକାର ପଡ଼ୁଛି । ବୌଦ୍ଧମାନେ ସୈନ୍ୟ ହୋଇ
ଶତ୍ରୁମାନଙ୍କ ବିରୁଦ୍ଧରେ ଲଢ଼େଇ କରିବାକୁ ଯାଉଛନ୍ତି, ସେମାନେ
ନୀତି ଦଳ ଭିତରେ ଅହିଂସା ଆଚରଣ କରୁଛନ୍ତି । ଏମାନେ ଯେବେ
ସେପରି ନକରନ୍ତେ, ତାହେଲେ ଅପଣା ଭିତରେ ହଣା . କଟା
ହୋଇ ମରନ୍ତେ । କିନ୍ତୁ ସତ୍ୟ ଓ ଅହିଂସା ଅନ୍ୟାୟର ସାହାଯ୍ୟ
ଦରକାର କରୁନାହିଁ । ଅନେକେ କୁହନ୍ତି ଯେ ଅହିଂସା ଓ
ସତ୍ୟ ଭଲ କିନ୍ତୁ ଆମେ ତାକୁ କାର୍ଯ୍ୟକାରୀ କରିପାରୁଚୁ ନାହିଁ ।
ଏ ଅଲଗା ଏକ ପ୍ରଶ୍ନ । ସାମ୍ୟବାଦୀମାନେ ନୀତିଦୃଷ୍ଟିରୁ ଅନ୍ୟାୟ
ପନ୍ଥାକୁ ମାନି ନିଅନ୍ତି । ତେଣୁ ସେମାନେ ନିଜର ଉଦ୍ଦେଶ୍ୟ ହାସଲ
ପାଇଁ ଯେ କୌଣସି ଗର୍ହିତ ପନ୍ଥା ଅବଲମ୍ବନ କରିବାରେ କୁଣ୍ଠା
ବୋଧ କରନ୍ତି ନାହିଁ । ଯଦି କେହି ଭାବେ ଯେ ନ୍ୟାୟ ପନ୍ଥାରେ
ଚାଲିବା ଉଚିତ କିନ୍ତୁ ନିଜର ଦୁର୍ବଳତା ଯୋଗୁଁ ସେ ନ୍ୟାୟ ପନ୍ଥା
ଅବଲମ୍ବନ କରିପାରୁନାହିଁ, ତାହେଲେ ଅନ୍ୟାୟ କଲାବେଳେ
ସେ ସଙ୍କୋଚ ବୋଧ କରିବ—ଅନ୍ତତଃ ପ୍ରଥମଥର ନହେଲେ
ଦ୍ୱିତୀୟ ଥରକୁ ସେ ନ୍ୟାୟପନ୍ଥାରେ ଯିବ । କିନ୍ତୁ ସାମ୍ୟବାଦୀମାନେ
ସେ ପ୍ରଶ୍ନ ଉଠାନ୍ତି ନାହିଁ । ସେମାନେ ଭାବନ୍ତି ଯେ ସତ୍ୟ ଓ
ଅହିଂସା—ଏସବୁ ବାଜେ କଥା । ସେମାନଙ୍କ ଦୃଷ୍ଟିରୁ ବିଚାର
କଲେ ମଧ୍ୟ ଦେଖାଯିବ ଯେ ସତ୍ୟ ଓ ଅହିଂସା ବାଜେ ନୁହେଁ—
ତା ମଧ୍ୟ ଆଜିକାଲି ଯୁଗରେ ଦରକାର । ଅହିଂସା ଉପାୟ ଛାଡ଼ି
ସଂସାରରେ ନିଜର କାର୍ଯ୍ୟ ହାସଲ କରିବାର ହେଲେ କୋଟି କୋଟି ଟଙ୍କ
ଖର୍ଚ୍ଚ କରି ପରମାଣୁ ବୋମା ତିଆରି କରିବାକୁ ପଡ଼ିବ । ସେଥିପାଇଁ
ଧନ ଥିଲେ ତ ହେବ ? ପୁଣି ଲୋକମାନଙ୍କୁ ଭୋକ ଉପାସରେ ରଖି
ଗୁଳି, ବାରୁଦ, ବୋମା ତିଆରି କଲେ ମଧ୍ୟ ଅନ୍ୟ ଦେଶମାନଙ୍କ
ସହିତ ପ୍ରତିଯୋଗିତା କରିବା ସମ୍ଭବ ନୁହେଁ । ଆମ ଦେଶକୁ ରୁଷିଆ

ଓ ଆମେରିକା ସହିତ ସାମରିକ ଚୁକ୍ତିରେ ଆବଦ୍ଧ ହେବାକୁ ଯେ କେତେ ବର୍ଷ ଲାଗିବ, ତାହା ସେମାନେ କଳ୍ପନା କରିପାରିବେ କି ? ଏ ସବୁ ଦୃଷ୍ଟିରୁ ଗାନ୍ଧିଜୀଙ୍କ କଳ୍ପିତ ପନ୍ଥା ଅତି ଗୃହୀତ ଓ ଅବଲମ୍ବିତ ହେବାରେ ଲାଗିଛି । ରାଜନୀତି ବିଶାରଦ ଅଧ୍ୟାପକ ଲାସ୍କି ଏହି ନ୍ୟାୟ ପନ୍ଥାକୁ ଅଧିକ ଜୋର ଦେଇ ଯାଇଛନ୍ତି । ଘୃଣା ଓ ହିଂସା ପୂର୍ବ ଲବ୍ଧ ଅଧିକାରୀମାନଙ୍କର ମତ ବଦଳ ବିପ୍ଳବ କରିବାକୁ (Revolution by consent) ସେ ସମର୍ଥନ କରିଛନ୍ତି । ସେଥିପାଇଁ ସେ Grammar of Politics ରେ ଲେଖିଛନ୍ତି ଯେ ପ୍ରାଚ୍ୟ ସଭ୍ୟତା ନୈତିକ ଶକ୍ତି । ବା ଯୀଶୁଖ୍ରୀଷ୍ଟଙ୍କଠାରୁ ବୁଦ୍ଧଙ୍କ ଦ୍ୱାରା ବେଶୀ ପ୍ରଭାବିତ ହୋଇଛନ୍ତି । ଅତଏବ ଯଦି ବସ୍ତୁତଃ ସ୍ୱୀକାର୍ଯ୍ୟ, ତାହେଲେ ଏହି ପଥ୍ୟ ଅମୃତମାନଙ୍କ ମନେ ରଖିବାକୁ ହେବ । କାରଣ ଘୃଣାରୁ ଜାତ ହୁଏ ଜାତିଘାତୀ ନୀତି । କିନ୍ତୁ ପ୍ରେମ ଦ୍ୱାରା ଆମେ ଘୃଣାକୁ ଜୟ କରୁ, ଭଲ ଦ୍ୱାରା ଆମେ ମନ୍ଦକୁ ଜୟ କରୁ (We overcome hate by love and evil by good, baseness begets only a progeny like to itself) । କେବଳ ସେତିକି ନୁହେଁ । ଲାସ୍କି ମଧ୍ୟ ଅନ୍ୟ ଏକ ସ୍ଥାନରେ କହିଛନ୍ତି ଯେ ହିଂସାତ୍ମକ ଉପାୟରେ ଯେଉଁ ସଫଳତା ଲାଭ ହୁଏ, ତା ବେଶୀ ଦିନ ସ୍ଥାୟୀ ହୁଏ । କିନ୍ତୁ ହିଂସା ଦ୍ୱାରା ଯେଉଁ ଅସନ୍ତୋଷ ସୃଷ୍ଟି କରାଯାଏ, ତାହା ବେଶୀ ଦିନ ରହି ପାରେ ନାହିଁ । ବସ୍ତୁତଃ ଏହି ଅଳକାପୁ ଜନତାରେ ମଧ୍ୟ ଶାନ୍ତ ଉପାୟରେ ସମାଜର ପରିବର୍ତ୍ତନ କରିବା ପାଇଁ ମତ ଦେଇଛନ୍ତି (Ruthlessness begets resentment, resentment must be kept down by force. As usual, the chief result of violence is the necessity to use more violence—'Ends and Means' P. 70) । ଏଥିରୁ ଦେଖାଯିବ ଯେ ପୃଥିବୀର ଗୁରୁତ୍ୱରେ

ଚିନ୍ତାଧାରାରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣୁଛନ୍ତି । ଆମେ ଯଦି ପ୍ରକୃତ ଅର୍ଥରେ ଯିବାକୁ ଚେଷ୍ଟା କରିବା, ତାହେଲେ ମତବାଦକୁ ଅନୁସରଣ ନ କରି ନୂଆ ମତବାଦ ସୃଷ୍ଟି କରିବା ଉଚିତ । ବିଜ୍ଞାନରେ ପରିବର୍ତ୍ତନ ହେଉଛି । ନୂତନ ଜ୍ଞାନଧାର ଆବିଷ୍କାର ହେଉଛି, ଉଦ୍ଭାବନ ହେଉଛି । ଆମେ ତାକୁ ଗ୍ରହଣ କରୁଛେ । କିନ୍ତୁ ସାମାଜିକ କ୍ଷେତ୍ରରେ ନୂଆ ଜ୍ଞାନଧାର ଆବିଷ୍କାର ହେଲେ, ତାକୁ ଗ୍ରହଣ କରିବାରେ କୁଣ୍ଠା ବୋଧ କରିବା କାହିଁକି ?

## ସତ୍ୟାଗ୍ରହ ଓ ଶ୍ରେଣୀ ସଂଘର୍ଷ

ଗାନ୍ଧିଜୀ ଓ ମାର୍କସବାଦୀମାନଙ୍କ ମତରେ ପାର୍ଥକ୍ୟ ନେଇ ଯେ ଯେଉଁ ଅର୍ଥ ତା ନୁହେଁ, ମତବାଦର ଆଲୋଚନା ନେଇ ମଧ୍ୟ ପାର୍ଥକ୍ୟ ଅଛି । ମାର୍କସବାଦୀମାନେ ମତବାଦକୁ ଶ୍ରେଣୀ ସଂଘର୍ଷ ଦୃଷ୍ଟିରୁ ଆଲୋଚନା କରନ୍ତି । ତେଣୁ ଶ୍ରେଣୀ ସଂଘର୍ଷ ଜରିଆରେ ସେମାନେ ଶ୍ରେଣୀହୀନ ସମାଜ ପ୍ରତିଷ୍ଠା କରିବାକୁ ଚାହାଁନ୍ତି । ଗାନ୍ଧିଜୀ ଶ୍ରେଣୀ ସଂଘର୍ଷରେ ବିଶ୍ୱାସ କରନ୍ତି ନାହିଁ । ଧନୀ ଓ ଗରିବଙ୍କୁ ଦୁଇଟି ଶ୍ରେଣୀ ଭାବରେ ବିଭକ୍ତ କରି ସେମାନଙ୍କ ମଧ୍ୟରେ ଯୁଦ୍ଧ ଘୋଷଣା କରିବା ଗାନ୍ଧିଜୀଙ୍କର ଲକ୍ଷ୍ୟ ନୁହେଁ । ଉଭୟ ଶ୍ରେଣୀରେ ଭଲ ଲୋକ ଅଛନ୍ତି, ମନ୍ଦ ଲୋକ ମଧ୍ୟ ଅଛନ୍ତି । ଉଭୟ ଶ୍ରେଣୀ ମଧ୍ୟରେ ସହଯୋଗ ମଧ୍ୟ ଅଛି । ଗାନ୍ଧିଜୀ ଏହି ସହଯୋଗ ପନ୍ଥାରେ ଦ୍ୱନ୍ଦ୍ୱର ସମାଧାନ କରିବାକୁ ଚାହାନ୍ତି । ଧନୀ ଓ ଦରିଦ୍ର ମଧ୍ୟରେ ଯେ ଦ୍ୱନ୍ଦ୍ୱ ଅଛି—ଏ କଥା ଗାନ୍ଧିଜୀ ମାନନ୍ତି । କିନ୍ତୁ ଦ୍ୱନ୍ଦ୍ୱ ଯୋଗୁଁ ମତବାଦ ସୃଷ୍ଟି ହୁଏ ନାହିଁ । ସେ ଏହି ଦ୍ୱନ୍ଦ୍ୱକୁ ଅହିଂସା ଉପାୟରେ ସମାଧାନ କରିବାର ପକ୍ଷପାତୀ ସେ, ହୁଅନ୍ତି । ସେଥିପାଇଁ ସେ ସତ୍ୟାଗ୍ରହ ନାମକ ଏକ ନୂଆ ଅସ୍ତ୍ର ବାହାର କରନ୍ତି । ଶୋଷଣକାରୀ ସତ୍ୟାଗ୍ରହ ଦ୍ୱାରା ସଂଗଠିତ ଅସହଯୋଗ ଯୋଗୁଁ ସତ୍ୟାଗ୍ରହ ଓ

ଅହିଂସା ବାଟରେ ନେଇଥିବ । ସତ୍ୟାଗ୍ରହର ବିଶେଷତ୍ୱ ଏହି ଯେ
ଯେଉଁମାନେ ସତ୍ୟାଗ୍ରହ କରନ୍ତି, ସେମାନେ ନିଜେ କଷ୍ଟ ସହିବାକୁ
ମାନି ନିଅନ୍ତି । ଅନ୍ୟାୟ ଦୂର କରିବା ପାଇଁ ସତ୍ୟାଗ୍ରହୀମାନେ
ନିଜ ଜୀବନ ପାଇଁ ଯେଉଁ ଦୁଃଖ ଓ କଷ୍ଟ ବରଣ କରି ନିଅନ୍ତି,
ତା ଫଳରେ ଶତ୍ରୁର ମଧ୍ୟ ମନ ବଦଳିଯାଏ—ତାଙ୍କ ନୈତିକତା
ଜାଗି ଯାଏ । ଏହି ଅନ୍ୟାୟକାରୀର ମାହାତ୍ମ୍ୟ ତାର ଶାସ୍ତ୍ରର କଥା ।
କେବଳ ସେପରି ନୁହେଁ । ଗାନ୍ଧୀଜୀଙ୍କର ସତ୍ୟାଗ୍ରହ ଅହିଂସା ପନ୍ଥା
ଅବଲମ୍ବନ କଲେ ମଧ୍ୟ ଏଥିରେ ଗଠନମୂଳକ ଶକ୍ତି ଥିଲା । ଆମ ଦେଶର
ଅସହଯୋଗ ଆନ୍ଦୋଳନ ତାର ଜ୍ୱଳନ୍ତ ଉଦାହରଣ । ଗାନ୍ଧୀଜୀ
ସତ୍ୟାଗ୍ରହୀମାନଙ୍କ ପାଇଁ ଗଠନମୂଳକ କାମ ସୃଷ୍ଟି କରିଥିଲେ ।
ଯେତେବେଳେ ସତ୍ୟାଗ୍ରହ ଚାଲିବ, ସେତେବେଳେ ଏମାନେ
ସୈନ୍ୟ ହିସାବରେ ଯୁଦ୍ଧ ପଡ଼ିଆରେ ଆଗ ଠିଆ ହେବେ । ଅନ୍ୟ
ସମୟରେ ଏହି ଗଠନମୂଳକ କାମ ସାହାଯ୍ୟରେ ନିଜ ଭିତରେ
ଶକ୍ତି ଓ ଏକତା ସୃଷ୍ଟି କରିବେ । ଆଜିକାଲି ଏହି ଗଠନମୂଳକ
କାମ ଓ ସତ୍ୟାଗ୍ରହ କଥା ଶୁଣି ଆଶା କରନ୍ତି । ଗଠନ ମୂଳକ
କାମରେ ପୁଣି ଦେଶ ବଦଳିଯିବ । କିନ୍ତୁ ସେମାନେ ଏକଥା ବୁଝି
ପାରନ୍ତି ନାହିଁ ଯେ ଏହି ଗଠନମୂଳକ କାମ ନ ଥିଲେ ସତ୍ୟାଗ୍ରହୀ-
ମାନଙ୍କ ମନରେ ଶକ୍ତି ଆସି ପାରନ୍ତା ନାହିଁ । ସବୁବେଳେ ସତ୍ୟା-
ଗ୍ରହ ହେବ ନାହିଁ । ଯେତେବେଳେ ସତ୍ୟାଗ୍ରହ ନାହିଁ, ସେତେ-
ବେଳେ ଏମାନଙ୍କ ପାଇଁ କିଛି କାମ ଦରକାର । ଯେତେବେଳେ ଯୁଦ୍ଧ
ନ ହୁଏ, ସେତେବେଳେ ସୈନ୍ୟମାନେ ହାତବସି ରହି ବସନ୍ତି
ନାହିଁ । ସେମାନେ ଡ୍ରିଲ୍ କସରତ ପୁଣି ସେପାଡନ୍ତି । ଆପଣା ଆପଣା
ଭିତରେ ନାନା ଖେଳ କରନ୍ତି । ତାନୁ ବାହାର ଉପରକୁ ବନ୍ଧୁକ
ଧରନ୍ତି । ସୈନ୍ୟମାନଙ୍କ ମନ ସ୍ଥିର ରଖିବା ପାଇଁ ଏପରି ଅନେକ

କାମ କରାଯାଏ । ସେହିପରି ସତ୍ୟାଗ୍ରହୀମାନଙ୍କ ମନ ଠାଣି ରଖିବା ପାଇଁ ଗାନ୍ଧିଜୀ ଗଠନମୂଳକ କାମର ସୂତ୍ରପାତ୍ କରିଥିଲେ । ଏହା ଫଳରେ ଲୋକଙ୍କ ସହିତ ସଂପର୍କ ଆସୁଥିଲା । କାରଣ ସେହିମାନଙ୍କ ସାହାଯ୍ୟରେ ହିଁ ଅସହଯୋଗ ଆନ୍ଦୋଳନ କରାଯାଇ ପାରେ । ପୁଣି ଗଠନମୂଳକ କାମ ଫଳରେ ଲୋକମାନଙ୍କର ମଧ୍ୟ କିଛି ଉପକାର ହେଉଥିଲା । ସର୍ବୋପରି ସତ୍ୟାଗ୍ରହୀମାନଙ୍କ ଭିତରେ ସଂହତି ରହୁଥିଲା । ଗାନ୍ଧିଜୀ ବ୍ରିଟିଶ ସରକାର ଅମଳରେ ଯେଉଁ ପ୍ରକାର ସତ୍ୟାଗ୍ରହ ଆନ୍ଦୋଳନ ସୁରୁ କରିଥିଲେ, ଶ୍ରେଣୀ ସଂଘର୍ଷ ଦୂର କରିବା ପାଇଁ ସେଇ ସତ୍ୟାଗ୍ରହ ଆନ୍ଦୋଳନ ମଧ୍ୟ ପ୍ରୟୋଗ କରାଯାଇ ପାରିବ । ଯେତେବେଳେ ଆମେ ଶିଳ୍ପବାଦର ନିବୃତ୍ତି ପାଇଁ ଧର୍ମଘଟ କଥା କହୁଛେ, ସେତେବେଳେ ସମସ୍ତେ ଏକମତ ହେଉଛନ୍ତି । କିନ୍ତୁ ସତ୍ୟାଗ୍ରହ କଥା କହିଲେ ଥଣ୍ଡା ଲାଗୁଛି । ସତ୍ୟାଗ୍ରହ ଏକପ୍ରକାର ଧର୍ମଘଟ । ବରଂ ଧର୍ମଘଟଠାରୁ ଏହା ଶ୍ରେୟସ୍କର । କାରଣ ସତ୍ୟାଗ୍ରହରେ ସତ୍ୟାଗ୍ରହୀମାନଙ୍କର ମନଦମ୍ଭ ରଖିବା ପାଇଁ ଗଠନମୂଳକ କାମ ଅଛି । ତଥାପି ଶିକ୍ଷିତଲୋକ-ମାନଙ୍କ ମନକୁ ଏହା ପାଉ ନାହିଁ । କାରଣ ସତ୍ୟାଗ୍ରହଠାରୁ ଶ୍ରେଣୀ ସଂଘର୍ଷ ଶୁଣିବାକୁ ଭଲ ଲାଗୁଛି । ଶ୍ରେଣୀ ସଂଘର୍ଷ ନାଁ ଶୁଣିଲେ ଦେହରେ ରୋମାଞ୍ଚ ସୃଷ୍ଟି ହେଉଛି । ମୋଟ କଥା ସତ୍ୟା-ଗ୍ରହଟା ଆମ ଦେଶକଥା । ତେଣୁ ଭଲ ଲାଗୁନି । ଶ୍ରେଣୀ ସଂଘର୍ଷ ବାହାରୁ ଆମଦାନୀ ହୋଇ ଆସିଛି—ତେଣୁ ଭଲ ହୋଇଥିବ । ଏହାକୁ ଗୌଣ ମନଭାବ ଛଡ଼ା ଆଉ କିଛି କୁହାଯାଇ ନ ପାରେ । ଯେତେବେଳେ ଆମେ ଶୁଣୁଛୁ ଯେ ମେରୀ ସ୍ୱଦେହରେ ସ୍ୱର୍ଗକୁ ଗଲେ, ସେତେବେଳେ ଆମେ ତାକୁ ଠିକ୍ ଯୁକ୍ତ ବୋଲି ଭାବୁଛୁ । ଯିଶୁ ଖ୍ରୀଷ୍ଟ ଯେ ଭଗବାନଙ୍କ ସନ୍ତାନ, ଏଥିରେ କୌଣସି ସନ୍ଦେହ

ନାହିଁ । କିନ୍ତୁ ଯଦି କେହି କହେ ଯେ ବସୁଦେବ କୃଷ୍ଣଙ୍କୁ ଧରି ବନ୍ଦୀ ଶାଳାରୁ ବାହାରିଗଲା ବେଳେ ଦରଜା ସବୁ ଅପେ ଅପେ ଫିଟିଗଲା, ତାହେଲେ ତାକୁ ଆମେ ଅଯୌକ୍ତିକ କଥା ବୋଲି କହୁଛୁ । ହିନ୍ଦୁମାନେ ଯେଉଁ ଦେବତା ପୂଜା କଲାବେଳେ ତାକୁ ଆମେ କୁସଂସ୍କାର ବୋଲି ଧରି ନେଉଛୁ । କିନ୍ତୁ ଯଦି ବାଇବଲକୁ ହଜାର ଥର ମୁଣ୍ଡିଆ ମରାଯାଏ, ତାହେଲେ ଯେ ସଂସ୍କାର ହୋଇ ରହୁଛୁ । ସେ ଯାହାହେଉ, ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଗାନ୍ଧିଜୀ ଯେଉଁ ସତ୍ୟାଗ୍ରହ ପ୍ରୟୋଗ କରି ଯାଇଛନ୍ତି, ତାହା ଧର୍ମଘଟଠାରୁ ସହଜ କିନ୍ତୁ ଅଧିକ ଶକ୍ତିଶାଳୀ ।

## ଜାତୀୟକରଣ ଓ ମାରଫତଦାରୀ ପ୍ରଥା

ଗାନ୍ଧିଜୀ ଓ ସାମ୍ୟବାଦୀ ଭିତରେ ସମ୍ପତ୍ତି ଅଧିକାର ନେଇ ଅନ୍ୟ ଏକ ମତଭେଦ ଅଛି । ସାମ୍ୟବାଦୀମାନେ ବ୍ୟକ୍ତିଗତ ସମ୍ପତ୍ତି ଲୋପକରି ଉତ୍ପାଦନ ପ୍ରଣାଳୀର ଜାତୀୟକରଣ ପ୍ରସ୍ତାବ ଦେଉଛନ୍ତି । ଉତ୍ପାଦନ ପ୍ରଣାଳୀର ଜାତୀୟ କରଣ ହେଲେ, ପୁଞ୍ଜିପତିମାନେ ଉତ୍ପାଦନ ପ୍ରଣାଳୀକୁ ନିଜ ଲାଭ ଉଦ୍ଦେଶ୍ୟରେ ଖଟାଇପାରିବେ ନାହିଁ । କିନ୍ତୁ ଗାନ୍ଧିଜୀ ପୁଞ୍ଜିବାଦର ଦୋଷ ଓ ଦୁର୍ବଳତା ଦୂରକରିବାପାଇଁ ମାରଫତଦାରୀ ପ୍ରଥା ଉପଯୁକ୍ତ ବୋଲି ବିଚାର କରିଛନ୍ତି । ଏହି ମାରଫତଦାରୀ ପ୍ରଥା ବିଷୟରେ ଶିକ୍ଷିତ ଲୋକମାନଙ୍କ ମନରେ ଅନେକ ସନ୍ଦେହ ଅଛି । କିନ୍ତୁ ଗାନ୍ଧିଜୀ ମାରଫତଦାରୀ ପ୍ରଥା ପ୍ରଚଳନ କରି ସମାଜରେ ଜମିଦାର ବା ପୁଞ୍ଜିପତିମାନଙ୍କର ଶୋଷଣକୁ ଚିରସ୍ଥାୟୀ କରିବାକୁ ଚାହୁଁ ନଥିଲେ । ସମାଜରୁ ଶୋଷଣ ଦୂରକରିବା ଗାନ୍ଧିଜୀଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । କିନ୍ତୁ ଗାନ୍ଧିଜୀ ଭାବୁଥିଲେ ଯେ ସମାଜରେ ଯଦି

ଜବରଦସ୍ତି ସମତା ଅଣାଯାଏ, ତାହାହେଲେ ଏହି ସମତା ସ୍ୱାଧୀନତା
ଅପହରଣ କରେ । କିନ୍ତୁ ସମସ୍ତଙ୍କ ପକ୍ଷରେ ପୂରା ସ୍ୱାଧୀନତା ଦିଆଯାଏ,
ତାହେଲେ ସମାଜରେ ଅସମାନତା ବଢ଼େ । କାରଣ ସବୁ ମନୁଷ୍ୟ
ପ୍ରକୃତି ସମାନ ନୁହେଁ । ସେ ସମସ୍ତଙ୍କୁ ସମାନ ସୁବିଧା ଓ ସୁଯୋଗ
ଦେବାକୁ ଚାହୁଁଥିଲେ—କିନ୍ତୁ କାହାର ବ୍ୟକ୍ତିତ୍ୱକୁ ନଷ୍ଟ କରିବାକୁ
ଚାହୁଁ ନଥିଲେ । ସେଥିପାଇଁ ସେ ମାର୍କ୍ସବାଦୀ ପ୍ରଥାର ପକ୍ଷପାତୀ ନ
ଥିଲେ । ଏହା ଫଳରେ ସମସ୍ତଙ୍କର ସ୍ୱତନ୍ତ୍ର ସମାଜର ଉପକାରରେ
ଲଗାଯାଇପାରିବ—କିନ୍ତୁ ଯଦି ସେ ବ୍ୟକ୍ତିତ୍ୱ ସ୍ୱତନ୍ତ୍ର ସମାଜର
କଲ୍ୟାଣରେ ନିୟୋଜିତ ହୋଇଛି, ତାହା ରୋକିପାରିବ ନାହିଁ ।
ସମସ୍ତଙ୍କର ସହଯୋଗରେ ସମାଜ ଚଳେ । ଗୋଟିଏ ଶ୍ରେଣୀକୁ
ସମାଜରୁ ସମୂଳୋତ୍ପାଟନ କରି ସମାଜକୁ ପୁନର୍ଗଠନ କରିବାକୁ
ଗଲେ, ଅନେକ ସମାଜରେ ହିଂସା ଓ ଘୃଣାର ମଞ୍ଜି ବୋଇ ହୁଏ ।
ଯାହାର ଶତ୍ରୁ ବଢ଼ନ୍ତି । ଶତ୍ରୁର ଗୁଣ ଉପଯୁକ୍ତ ସାର୍ଥକ ବ୍ୟବହାର
କରାଯାଇପାରେନାହିଁ । ମାର୍କ୍ସବାଦୀ ପ୍ରଥା ଫଳରେ ପୂର୍ବକାଳୀନ
ପ୍ରତିପତ୍ତି ଏକ ମ୍ୟାନେଜର ରୂପେ ଉପଯୁକ୍ତ ପରିଚାଳନା କରେ
ସାମ୍ୟବାଦୀ ସମାଜରେ ତୁରନ୍ତ ତାଙ୍କୁ ପାଣି ମିଳନ୍ତା । କିନ୍ତୁ ଏପି
ଲୋକଙ୍କୁ ଏକ ସାଧାରଣ ଦରମା ଦିଆଯାଉଛି । ସେ ଉପଯୁକ୍ତ ମାଲିକ ହୋଇ
ପାରିବ ନାହିଁ—କିନ୍ତୁ ଉପଯୁକ୍ତ ପରିଚାଳନା କରିବ । ଦ୍ୱିତୀୟରେ
ଶିଳ୍ପ ବା ବ୍ୟବସାୟର ସମ୍ପୂର୍ଣ୍ଣ ଲାଭ ତାଙ୍କୁ ମିଳିବ ନାହିଁ
ସାଧାରଣ ପରିସ୍ଥିତି ଭାବରେ ଉନ୍ନତ [illegible] ଶ୍ରମିକର ମଜୁରୀଠାରୁ
ମାର୍କ୍ସବାଦୀର ପାଉଣା ୧୨ଗୁଣରୁ ଅଧିକ ହୋଇ ପାରିବ ନାହିଁ ।
ଅଥଚ ରୁଷିଆର କଳକାରଖାନାରେ ମ୍ୟାନେଜରମାନେ ଏହାଠାରୁ
ଅଧିକ ପାଉଣା ପାଉଛନ୍ତି ବୋଲି ବର୍ଣ୍ଣହାମ ମତ ଦେଉଛନ୍ତି
ପୁଣି ଗାନ୍ଧୀଜୀଙ୍କ କଳ୍ପିତ ସଙ୍ଗଠନରେ ଉତ୍ପାଦନ ପ୍ରଣାଳୀ ବୃଦ୍ଧିପାଏ

ଏହା ଉଚିତ ହେବନାହିଁ । ତେଣୁ ବୁର୍ଜୁଆର କଳକାରଖାନା ମ୍ୟାନେଜରମାନେ ଅର୍ଥନୀତି ଓ ରାଜନୀତିରେ ଯୋଗର ପ୍ରଭାବ ବିସ୍ତାର କରୁଛନ୍ତି ମାରଫତଦାରମାନେ ଯାହା କରିପାରୁଥିବେ ନାହିଁ ନୂତନ ଯୁଗରେ ଗାନ୍ଧୀଙ୍କ ଅର୍ଥନୀତିରେ ମାରଫତଦାରମାନେ ଜାତି ସୁବିଧାପାଇଁ ଉତ୍ପାଦନ କରିବେ ନାହିଁ । ସାମ୍ୟବାଦରେ ଯେମିତି ଯୋଜନା ଅଛି, ଗାନ୍ଧି ଅର୍ଥନୀତିରେ ମଧ୍ୟ ସେହିପରି ଯୋଜନା ରହିବ । କିନ୍ତୁ ଯୋଜନାର ରୂପ ବଦଳିଯିବ । ସେ କଥା ଆମ୍ଭେ ଅବେଚନା କରୁଯାଉଛୁ । ତେବେ ଉତ୍ପାଦନ ପ୍ରଣାଳୀ ଯେ ଧମାଜର ହିତପାଇଁ କାର୍ଯ୍ୟ କରିବ, ଏଥିରେ କୌଣସି ସନ୍ଦେହ ନାହିଁ । ଯେତେବେଳେ ମାରଫତଦାରମାନେ ଏହି ସମାଜର ହିତ-ପାଇଁ କାର୍ଯ୍ୟ ନ କରନ୍ତି, ଗାନ୍ଧିଜୀଙ୍କ ଅଧିକ ବଳ ସେମାନଙ୍କ କାର୍ଯ୍ୟକୁ ନିୟନ୍ତ୍ରଣ କରିବାକୁ ହେବ, ଦରକାର ହେଲେ ସରକାରଙ୍କ ସାହାଯ୍ୟରେ ସେମାନଙ୍କୁ ସେମାନଙ୍କ କ୍ଷମତାରୁ ବଞ୍ଚିତ କରାଯିବ (but if they fail, I believe we shall have to deprive them of their possessions through the state with the minimum exercise of violence—M. K. Gandhi) କିନ୍ତୁ ଗାନ୍ଧିଜୀ ଏ ସରକାରୀ କ୍ଷମତା ପ୍ରୟୋଗ କରିବା ପୂର୍ବରୁ ପୁଞ୍ଜିପତି ଓ ଜମିଦାର-ମାନଙ୍କୁ ଅନେକ ସୁଯୋଗ ଦେବାକୁ ଚାହୁଁଥିଲେ । କାରଣ ସେ ଭାବୁଥିଲେ ଯେ ବ୍ୟକ୍ତିଗତ ସମ୍ପତ୍ତିର ହିଂସାଠାରୁ ରାଷ୍ଟ୍ରର ହିଂସା ଅଧିକ ଖରାପ । (as in my opinion the violence of private ownership is less injurious than the violence of the state) । ଏଥିରୁ 'ଗାନ୍ଧିଜୀଙ୍କ ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦର ଏକ ସମର୍ଥକ ବୋଲି ଯେଉଁ କମ୍ୟୁନିଷ୍ଟମାନେ କହନ୍ତି କହୁଛନ୍ତି, ତା ଠିକ୍ ଜାଣନ୍ତିନାହିଁ ।

## ସାମ୍ୟବାଦ ଓ ଗାନ୍ଧି ଅର୍ଥନୀତି

ଶେଷରେ ଆମେ ସାମ୍ୟବାଦ ଓ ଗାନ୍ଧିଜୀଙ୍କ ଅର୍ଥନୀତି ବିଷୟରେ ଅଳ୍ପ କେତେ ପଦ କହିବା । ସାମ୍ୟବାଦୀମାନେ ରାଷ୍ଟ୍ରର କ୍ଷମତା ବଢ଼ାଇ ସବୁଦିଗରୁ ଏକଛତ୍ର ଶାସନ ପ୍ରତିଷ୍ଠା କରିବାକୁ ଚାହାନ୍ତି । ଯେଉଁମାନେ ଏହି ଏକଛତ୍ର ଶାସନ ପରିଚାଳନା କରିବେ, ସେମାନେ ଅର୍ଥନୀତି ଓ ରାଜନୀତି ନିୟନ୍ତ୍ରଣ କରିବେ । ଗାନ୍ଧିଜୀ ରାଷ୍ଟ୍ରର ରାଜନୈତିକ ଓ ଅର୍ଥନୈତିକ କ୍ଷମତା କମାଇବାକୁ ଚାହାନ୍ତି । ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ବିକେନ୍ଦ୍ରୀକରଣ କରି ଗଣତାନ୍ତ୍ରିକ ମନୋଭାବ ପରିପୁଷ୍ଟ କରିବାକୁ ଚାହାନ୍ତି । ଗାନ୍ଧିଜୀ ଜୀବନକୁ ଜଟିଳ କରିବାକୁ ଚାହୁଁ ନଥିଲେ ଜୀବନର ସରଳତା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । ସେଥିପାଇଁ ସେ ବଡ଼ ଧରଣର କଳ କାରଖାନାର ନିୟନ୍ତ୍ରଣ କରିବାକୁ ଚାହିଁଥିଲେ । ସାମ୍ୟବାଦୀମାନେ କଳକାରଖାନାକୁ ଜାତୀୟକରଣ କରି ସରକାରର କ୍ଷମତା ବଢ଼ାନ୍ତି । ଗାନ୍ଧିଜୀ କଳକାରଖାନାକୁ ସବୁ ଶୋଷଣର ଚାବି କାଠିରେ ଭାବନ୍ତି । ପୁଞ୍ଜିବାଦ ଅବସ୍ଥାରେ ପୁଞ୍ଜିପତିମାନେ ଏହି କଳକାରଖାନା ସାହାଯ୍ୟରେ ଶୋଷଣ କରନ୍ତି ସାମ୍ୟବାଦରେ ସରକାର ଶୋଷଣ କରନ୍ତି । ତେଣୁ ଏହି କଳକାରଖାନାକୁ ସହଜ କରି ଲୋକମାନେ ନିଜର ଏହାର ପରିଚାଳନା କରି ପାରିବେ, ସେଥିପାଇଁ ଗାନ୍ଧିଜୀ ଚେଷ୍ଟା କରିଥିଲେ । ଗାନ୍ଧିଜୀ ନିଜ ଜୀବନରେ ସରଳତାର ଆଦର୍ଶ ଥୋଇ ଯାଇଛନ୍ତି । କେବଳ ଗାନ୍ଧିଜୀ ନାହାନ୍ତି, ପୃଥିବୀର ପ୍ରତ୍ୟେକ ମନୀଷି ଏହି ସରଳତା ଆଦର୍ଶରେ ଅନୁପ୍ରାଣିତ ହୋଇଛନ୍ତି । ଅଧିକ ସାଧନକର ସମ୍ପଦର ଅନ୍ତ ନାହିଁ । କିନ୍ତୁ ସେ ସ୍ନାନ ଓ ଶିକ୍ଷା

କାର୍ଯ୍ୟ ପାଇଁ ଦୁଇଟି ଅଲଗା ସାବୁନ ବ୍ୟବହାର ନ କରି ଗୋଟିଏ
ସାବୁନ ବ୍ୟବହାର କରନ୍ତି । ଦୁଇଟି କାର୍ଯ୍ୟ ପାଇଁ ଅଲଗା ଅଲଗା
ସାବୁନ ବ୍ୟବହାର କଲେ ଜୀବନ ଜଟିଳ ହୋଇଯିବ ବୋଲି
ତାଙ୍କର ଧାରଣା । ଗାନ୍ଧିଜୀ ଯେ ସରଳତା ଉପରେ ଜୋର
ଦେଉଛନ୍ତି ତା ନୁହେଁ, ଶାରୀରିକ ଶ୍ରମ ଉପରେ ମଧ୍ୟ ଜୋର
ଦେଉଛନ୍ତି । ସେଣ୍ଟ ପଲଙ୍କ ଭାଷାରେ ଯେ କାମ କରିବ ନାହିଁ, ସେ
ଖାଇବାକୁ ପାଇବ ନାହିଁ । ଗାନ୍ଧିଜୀ ମଧ୍ୟ ଏଥିରେ ବିଶ୍ୱାସ
କରୁଥିଲେ । ତେଣୁ ବିଶ୍ରାମ ପାଇଁ ଆଜି ଯେଉଁ ଦାବି ଉଠୁଛି, ତାର
ସେ ପ୍ରତିବାଦ କରିଥିଲେ । ବର୍ଟ୍ରାଣ୍ଡ ଓ ଥରେ କହିଥିଲେ ଯେ
ଯେଉଁମାନେ ଜୀବନକୁ ଏକ ଛୁଟି ବୋଲି ମନେ କରନ୍ତି,
ସେମାନେ ଅନେକ ସମୟରେ ଏହି ଛୁଟିରୁ ମଧ୍ୟ ବିଶ୍ରାମ ପାଇବାକୁ
ଚାହାନ୍ତି । କାରଣ ଖାଲି ବିଶ୍ରାମ ନେଇ ସମୟ କଟେଇବା
ଅସ୍ୱାଭାବିକ ଓ ବିରକ୍ତିକର । ଯେଉଁମାନେ ଖାଲି ବିଶ୍ରାମ ନେଉ
ଥାନ୍ତି, ସେମାନେ ତ ବିଶ୍ରାମ ପାଆନ୍ତି ନାହିଁ । ବରଂ ବିଶ୍ରାମ
ପରିସ୍ଥିତିରେ ଅତି କଷ୍ଟ କାମ କରିବାରେ ଲାଗନ୍ତି । ସେଥିପାଇଁ ମ୍ ଙ୍କ
ମତରେ ନରକର ଶ୍ରେଷ୍ଠ ସଂଜ୍ଞା ଅବସର ମିଳେ ( The best
definition of Hell is porpotual holiday. )
ଗାନ୍ଧିଜୀଙ୍କ ମତରେ ଅବସର ବିନୋଦନ ଜୀବନର ଅଧୋଗତି
ଆଣେ । ତେଣୁ ଗାନ୍ଧିଜୀ ଚାହାନ୍ତି ଯେ ପ୍ରତ୍ୟେକ ବ୍ୟକ୍ତି କିଛି ନା
କିଛି ଶାରୀରିକ କାମ କରିବା ଉଚିତ । ମୋଟ କଥା ଗାନ୍ଧିଜୀ
ଅର୍ଥନୀତିକୁ ନୈତିକତାଠାରୁ ବାଦ ଦେଇ ନାହାନ୍ତି । ସମ୍ପଦ ଓ
ଜଳିଷ୍ଣୁବ୍କ ପଣ ଧନଠାରୁ ମନୁଷ୍ୟକୁ ବଡ ସ୍ଥାନ ଦେଉଛନ୍ତି ।
ତେଣୁ ମନୁଷ୍ୟର ମନକୁ ବୃଦ୍ଧି କରିବା ପାଇଁ ଅର୍ଥନୈତିକ
ନୀତିକୁ ସରଳ ଓ ସହଜ କରି ଜୀବନର ଉତ୍କର୍ଷ୍ୟର ଏବ

ପରିବର୍ତ୍ତନ ଘଟାଇବାକୁ ଚାହୁଁଛନ୍ତି । ତେଣୁ ଅନେକ ଗାନ୍ଧିଜୀଙ୍କର ବିପ୍ଳବକୁ ନୀରବ ବିପ୍ଳବ ବୋଲି ଆଖ୍ୟା ଦେଇଛନ୍ତି ।

## ଗାନ୍ଧିଜୀ ଓ ମାର୍କସ

ସାମ୍ୟବାଦର କର୍ଣ୍ଣଧାର ମାର୍କସଙ୍କ ସହିତ ଗାନ୍ଧିଜୀଙ୍କୁ ଯଦି ତୁଳନା କରାଯାଏ, ତାହେଲେ ଏତିକି ବୁଝାଯିବ ଯେ ମାର୍କସ ଊନବିଂଶ ଶତାବ୍ଦୀର ପୁଞ୍ଜିବାଦର ଦୋଷ ଦୁର୍ବଳତା ଦୂର କରିବା ପାଇଁ ଏକ ସମାଧାନ ବାଢ଼ିଥିଲେ । ଗାନ୍ଧିଜୀ ବିଂଶ ଶତାବ୍ଦୀର ପୁଞ୍ଜିବାଦ ଓ ଏକଚ୍ଛତ୍ରବାଦର ଦୋଷ ଦୁର୍ବଳତା ଦୂର କରିବା ପାଇଁ ଏକ ସମାଧାନ ବାଢ଼ିଛନ୍ତି । ମାର୍କସଙ୍କ ମତ ଅନୁସାରେ ଗଣତନ୍ତ୍ର ଅର୍ଥପୂର୍ଣ୍ଣ ନୁହେଁ । କାରଣ ପୁଞ୍ଜିପତିଙ୍କ ପରିବାଞ୍ଛରେ ଅଦ୍ଭୁତ ଏକ ଷଡ଼ଯନ୍ତ୍ରଶାଳୀ ଅନୁଷ୍ଠାନ ପୁଞ୍ଜିପତିଙ୍କର କାର୍ଯ୍ୟ ତତ୍ପର । ମାର୍କସଙ୍କ ସିଦ୍ଧାନ୍ତ ଅନୁସାରେ ବଡ଼ ବଡ଼ କଳ କାରଖାନା ରହିବ, ସରକାର ତାର ମାଲିକ ହେବେ, ମୁଷ୍ଟିମେୟ ମ୍ୟାନେଜରମାନେ ତାର ପରିଚାଳନା କରିବେ । ସାଧାରଣ ଲୋକମାନେ ପୂର୍ବରୁ ପୁଞ୍ଜିପତିମାନଙ୍କ ମତ ଅନୁସାରେ ଚଳୁଥିଲେ । ପୁଞ୍ଜିବାଦ ପରେ ମ୍ୟାନେଜରଙ୍କ କଥା ଅନୁସାରେ ଚଳିବେ । ତେଣୁ ସେମାନଙ୍କର ନିଜର କିଛି ସତ୍ତା ରହିବ ନାହିଁ । ହୁଏତ ଏଥିରେ ଅର୍ଥନୈତିକ ଉନ୍ନତି ଶୀଘ୍ର ସମ୍ଭବ ହୋଇ ପାରେ । କିନ୍ତୁ ଗାନ୍ଧିଜୀ ଅର୍ଥନୀତିକୁ ସରଳ କରି ପ୍ରତ୍ୟେକ ଲୋକପାଇଁ କିଛି ନା କିଛି କାମର ବ୍ୟବସ୍ଥା କରି ସହକାରିତା ସମତା ଆଣିବେ ଓ ବ୍ୟକ୍ତିର ମହତ୍ତ୍ୱ ବଢ଼ାଇବେ । ଗାନ୍ଧିଜୀଙ୍କ ନୀତି ଅନୁସାରେ ଗଣତନ୍ତ୍ରର କଲ୍ୟାଣ ହେବ, ମାନବିକତାର ଉତ୍କର୍ଷ ସାଧିତ ହେବ । ଗୋଟିଏ ପକ୍ଷେ ସ୍ୱାଧୀନତା ଓ ଅନ୍ୟପକ୍ଷେ ଭ୍ରାତୃତ୍ୱ ।

୯ ନୂଆଟି ଭାଗରୁ ଆମକୁ ଗୋଟିକୁ ବାଛିନେବାକୁ ପଡ଼ିବ ।
ଯେଉଁମାନେ ଅଳ୍ପ କ୍ଷେତ୍ର ଉପାୟରେ ଚେଷ୍ଟାକରନ୍ତି, ତୁରନ୍ତ ସେମାନଙ୍କ
ଦ୍ୱିଗୁଣିତ ବର୍ଦ୍ଧିମାନ ପାଇଁ ସମ୍ପଦ ମିଳିବ । କିନ୍ତୁ ପରେ ସେମାନେ
ଦେଖିବେ ଯେ ସ୍ୱାତନ୍ତ୍ର୍ୟ ଆଉ ସ୍ୱାଧୀନତା ନଥିଲେ, ସ୍ୱାତନ୍ତ୍ର୍ୟ ସମ୍ପ
ଲବ୍ଧ ପାଇବ ନାହିଁ । କେତେକ ମୁକ୍ତିମେଳ୍ପ ଚେଷ୍ଟା ଝାଙ୍କି ଦି
ନିଜର କହିନେବେ । ତେଣୁ ଗାନ୍ଧିଜୀଙ୍କ ପନ୍ଥା ମାର୍କସଙ୍କ ପନ୍ଥାଠାରୁ
ଅଧିକାଂଶ ସ୍ଥଳରେ ବେଶ ଶ୍ରେୟସ୍କର, ଏଥିରେ କୌଣସି ସନ୍ଦେହ
ନାହିଁ । ତେବେ ଯେଉଁମାନଙ୍କର ଗାନ୍ଧିଜୀଙ୍କ ପନ୍ଥା ଅନୁସାରେ
ଯିବାକୁ ବଳ ପାଉନାହିଁ, ସେମାନେ ଗାନ୍ଧିଜୀ ଓ ମାର୍କସଙ୍କ ଭିତରେ
ଏକ ସମନ୍ୱୟ ଆଣିବାକୁ ଚାହୁଁଛନ୍ତି । ସମାଜବାଦ ଏହି ସମ-
ନ୍ୱୟର ଏକ ଚିହ୍ନ । ଯେଉଁମାନେ ଏହି ସମାଜବାଦରେ ବିଶ୍ୱାସ
କରୁଛନ୍ତି, ସେମାନେ ଶାନ୍ତି ଉପାୟରେ ସରକାରୀ ବଳ ସାହାଯ୍ୟରେ
ସମାଜର ପୁନର୍ଗଠନ କରିବାକୁ ମତ ଦେଉଛନ୍ତି । ଇଂଲଣ୍ଡରେ
ଏହାର ପରୀକ୍ଷା ଅନେକ ଦିନରୁ ଆରମ୍ଭ ହେଲାଣି । ଏବେ ଆମେ
ଯେ ଭାରତରେ ସିଆ ବୋଲି ଚେଷ୍ଟା କରୁଛେ । ଗାନ୍ଧିଜୀଙ୍କ ସ୍ୱଗତ
ଏଥିପାଇଁ ଦାୟୀ ବୋଲି ଜାଣିନାହେ ଜୁହାପାର ପାରେ ।
ସମାଜବାଦରେ ଅର୍ଥନୈତିକ ଯୋଜନା ହେଉଛି—କିନ୍ତୁ ଗଣ-
ତାନ୍ତ୍ରିକ ଭାବରେ ଏହା ଚରିତ୍ରନାର ହେଉଛି । ସରକାର ଶିଳ୍ପ
ଓ ବ୍ୟବସାୟକୁ ଜାତୀୟ କରଣ କରୁଛନ୍ତି, ଜମିଦାରୀ ଦଖଲ
କରୁଛନ୍ତି, ଭୂମିର ସଂସ୍କାର କରୁଛନ୍ତି । କିନ୍ତୁ ଜୀବନଯାତ୍ରୀ ସମ୍ପତ୍ତି
ଛଡ଼େଇ ନେଉ ନାହାନ୍ତି । ଯାହାକୁ ସମ୍ପତ୍ତିରୁ ବାହାର କରୁଅ-
ଯାଉଛି, ତାକୁ କ୍ଷତିପୂରଣ ଦିଆଯାଉଛି । ଅନେକ ବଡ଼ ବଡ଼
ଶିଳ୍ପ ଓ ବ୍ୟବସାୟ ମଧ୍ୟ ବ୍ୟକ୍ତିଗତ ସମ୍ପତ୍ତି ରହିବ କହୁଛନ୍ତି—
ସରକାର କେବଳ ବଣ କର ବସାଇ ଏହାର ନିୟନ୍ତ୍ରଣ କରୁଛନ୍ତି ।

ତେଣୁ ଅର୍ଥନୈତିକ କ୍ଷମତାକୁ ବିକେନ୍ଦ୍ରୀକରଣ କରିବାରେ ଏହା ସାହାଯ୍ୟ କରୁଛନ୍ତି । କେନ୍ଦ୍ର ସରକାରଙ୍କର କ୍ଷମତା ବଢୁଛି—କିନ୍ତୁ କେନ୍ଦ୍ରସରକାର ଲୋକ ପ୍ରତିନିଧିମାନଙ୍କ ଦ୍ୱାରା ପରିଚାଳିତ ହେଉଛନ୍ତି । ବ୍ୟକ୍ତିଗତ ସ୍ୱାଧୀନତା ରହୁଛି—ତଥାପି ସମାଜ ବଦଳୁଛି—ସର୍ବୋଦୟରୁ ସଂସ୍କାର ହେଉଛନ୍ତି । କାର୍ଯ୍ୟରେ ବହୁ ଏତ ଅନେକ ଜାଗାରେ ଭୁଲ ରହିଯାଉଛି । ପ୍ରଥମେ ପ୍ରଥମେ ଭୁଲ ହେବ । କିନ୍ତୁ ଆଦର୍ଶ ଠିକ୍ ଥିଲେ, ପନ୍ଥା ଉତ୍ତମ ଥିଲେ, ଭୁଲ ଆପେ ଆପେ ସୁଧୁରିଯିବ । ସମାଜବାଦୀମାନେ ମାର୍କସଙ୍କ ପନ୍ଥା ଅନୁସରଣ କରୁନାହାନ୍ତି । କାରଣ ମାର୍କସଙ୍କ ଯୁଗ ଚାଲିଯାଇଛି । ଗାନ୍ଧିଜୀଙ୍କ ପନ୍ଥା ମଧ୍ୟ ଅନୁସରଣ କରି ପାରୁନାହାନ୍ତି । କାରଣ ସେଥିପାଇଁ ସେମାନଙ୍କର ଶକ୍ତି ନାହିଁ । ସେ ଯୁଗ ଏ ପର୍ଯ୍ୟନ୍ତ ଆସିନାହିଁ । ମଧ୍ୟବର୍ତ୍ତୀ ଅବସ୍ଥାରେ ଦୁଇଟିର ସମନ୍ୱୟ କରି ଏକ ନୂଆ ପନ୍ଥା ନିଆଯାଇଛି । ଗାନ୍ଧିଜୀ ଆଜି ଥିଲେ ବୋଧହୁଏ ଏହି ପରୀକ୍ଷାକୁ ସମର୍ଥନ କରିଥାନ୍ତେ ।

---



---

ମୁଦ୍ରାକର—ଶ୍ରୀ ନିମାଇଁଚରଣ ଦାସ

ଦି ଓଡ଼ିଶା ପ୍ରିଣ୍ଟିଂ ଏଣ୍ଡ ପବ୍ଲିସିଂ କୋଃ ବାଲୁବଜାର, କଟକ—୨